# ପୃଥିବୀର ଲୋକକଥା

( ପଞ୍ଜାବ ଲୋକକଥା )

[ ପ୍ରଥମ ଭାଗ ]

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି. ଏସ୍. ସି., ଏଲ୍. ଏଲ୍. ବି.
ଓ. ଏସ୍. ଜେ. ଏସ୍. (ଅବସର)

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍. ଏ., ବି. ଇଡ୍

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# PRUTHIBIR LOKAKATHA

( Punjab Lokakatha )

First Part

# ପୃଥିବୀର ଲୋକକଥା

( ପଞ୍ଜାବ ଲୋକକଥା )

ପ୍ରଥମ ଭାଗ



ପ୍ରକାଶକ :

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**

ବଘାଳ, ପୋ: ବଘାଳ, ପୁରୀ

ପ୍ରଥମ ସଂସ୍କରଣ—ମେ' ପଣ୍ଡାଲ୍, ୧୯୮୭
ଦ୍ୱିତୀୟ ସଂସ୍କରଣ—ଶିବରାତ୍ରୀ, ୧୯୯୦
ତୃତୀୟ ସଂସ୍କରଣ—ମାଘ ପୂର୍ଣ୍ଣିମା, ୧୯୯୭
ଚତୁର୍ଥ ସଂସ୍କରଣ—୨୦୦୩, ବୁଦ୍ଧ ପୂର୍ଣ୍ଣିମା

ପ୍ରଚ୍ଛଦପଟ— **ଶ୍ରୀ ରବିନାରାୟଣ ନାୟକ**

ମୁଦ୍ରଣ : **କେ.ବି.ଏସ୍. ପ୍ରିଣ୍ଟର୍ସ**
ଡଗରପଡ଼ା, କଟକ-୨

**ମୂଲ୍ୟ—୧୫ ଟଙ୍କା**

# ନିବେଦନ

ପ୍ରାୟ ଅଶୀ ହଜାର ବର୍ଷ ତଳେ ମଣିଷ ପଶୁଭଳି ରହୁଥିଲା । ରନ୍ଧାଖାଦ୍ୟ ଖାଇବା କଥା ସେ ଜାଣିନଥିଲା । କିନ୍ତୁ କଳିଙ୍ଗରେ ମଣିଷ ଥିଲା ଅଲଗା । ସେ ମାଟି ପାତ୍ର ତିଆରି କରି ସେଥିରେ ରାନ୍ଧି ଖାଉଥିଲା । ସେ ସମୟର ସଭ୍ୟତାର ଶୀର୍ଷ ସ୍ଥାନରେ ସେ ଯେ ପହଞ୍ଚି ଯାଇଥିଲା, ଏହା କ'ଣ ଅସ୍ୱୀକାର କରିହେବ ?

ମଣିଷ ଯେତେବେଳେ ସମୁଦ୍ରକୁ ଦେଖି ଡରୁଥିଲା, ସେତେ-ବେଳେ କଳିଙ୍ଗର ଲୋକେ ଆହୁଲା ମାରି ଆଉ ପବନର ସାହାଯ୍ୟ ନେଇ ଆଧୁନିକ ଭିଏତନାମରେ ପ୍ରଥମେ ବସତି ସ୍ଥାପନ କରିଥିଲେ । ଏ ରାଜ୍ୟର ନାମ ଚମ୍ପାଗଡ଼ ରଖିଥିଲେ ।

କଳିଙ୍ଗର ଲୋକେ ମହାଭାରତ ଯୁଦ୍ଧର ଅଂଶୀଦାର । ଯୁଦ୍ଧରେ ଚଣ୍ଡାଶୋକଙ୍କୁ ଧର୍ମାଶୋକ କରିବାରେ ସକ୍ଷମ । ଖାରବେଳଙ୍କ ପଞ୍ଜାବ ବିଜୟରେ ଓ କପିଳେନ୍ଦ୍ର ଦେବଙ୍କ ଦାକ୍ଷିଣାତ୍ୟ ବିଜୟରେ ଅଂଶୀଦାର ।

ଏ ରାଜ୍ୟରେ ଅଗଣିତ ମନ୍ଦିର, ପୁଷ୍କରଣୀ ଓ ଅନ୍ୟାନ୍ୟ କୀର୍ତ୍ତୀ ପୂରିରହିଛି ।

ଏସବୁ ଷୋଡ଼ଶଶ ଶତାବ୍ଦୀର ପୂର୍ବକଥା । ତାପରେ ଆସିଲା ଆମ୍ଭ ଦାରିଦ୍ର୍ୟ । ଧୋଇ ମରୁଡ଼ି ଆମର ଚିରସ୍ଥାୟୀ ଦୁଃଖ । ଏହାର ସମାଧାନ ଏକାନ୍ତ ଆବଶ୍ୟକ । ସ୍ୱାଧୀନତା ହରାଇବା ପୂର୍ବରୁ ଆମେ ଏ ସମସ୍ୟା କିପରି ସମାଧାନ କରିଥିଲୁ, ସେ ବିଷୟରେ ଆମର ଧାରଣା ବି ନାହିଁ । ଯେଉଁ ଇଂରେଜମାନେ ଆମକୁ ଉତ୍ପୀଡ଼ନାକ୍ରାନ୍ତ କରିଥିଲେ, ସେମାନଙ୍କ ପଦାନୁସରଣ ଆମର ସମସ୍ୟା ସମାଧାନ ହିଗରେ ଏକମାତ୍ର ବାଟ ବୋଲି ଆମେ ଧରିନେଇଛୁ । ଏଥିରୁ ଫେରିବାର କ'ଣ ବାଟ ନାହିଁ ? ଏ ତ ଆମର ସମସ୍ୟା । ଲୋକ କଥାରୁ ସମାଧାନ ଖୋଜିଲେ କ୍ଷତି କଣ ?

ଲୋକକଥା ଅଭିଜ୍ଞ ଲୋକର ଅନୁଭୂତିର ପରିପ୍ରକାଶ । ଜଟିଳ ସମସ୍ୟା ସମାଧାନର ଏକ ସୂକ୍ଷ୍ମ ସୂତ୍ର । ସୁନାକୁ ଯେପରି ମାଟି ଖାଇପାରେ ନାହିଁ, ଏହାକୁ ସେହିପରି କାଳ ଖାଇପାରି ନାହିଁ । ତୁଣ୍ଡର କଥାରେ ଏହା ବଞ୍ଚି ରହିଥିଲା । ପରକାଳରେ ଏହାକୁ ଲେଖା ମାଧ୍ୟମରେ ବଞ୍ଚାଇବାକୁ ଉଦ୍ୟମ ହୋଇଛି ।

ଆମକୁ ବଞ୍ଚିବାକୁ ହେବ । ଜ୍ଞାନ ହିଁ ଏହାର ମାର୍ଗ । ଲୋକ-କଥାରେ ଜ୍ଞାନ ଭରପୂର । ଅତି ସହଜ କ୍ଷୁଦ୍ର ଗପ ମାଧ୍ୟମରେ । ଏହାର ପ୍ରସାର ପାଇଁ ଆମେ ଶ୍ରେଷ୍ଠ ଶ୍ରେଷ୍ଠ ବହି ପ୍ରକାଶ କରୁଛୁ । ଏହା ଛଅଶହ ବହିରେ ପ୍ରକାଶ ପାଇବ । ଏ ଜାତିକୁ ବଞ୍ଚାଇବା ପାଇଁ ଆମର ଏହା ଏକ ଉଦ୍ୟମ । ଏଥିପାଇଁ ଆପଣଙ୍କର ସାହାଯ୍ୟ ଅପରିହାର୍ଯ୍ୟ ।

ଲକ୍ଷ୍ମୀଧର ମହାନ୍ତ

---

# ସୂଚୀପତ୍ର

# ଭଗବାନଙ୍କ ଗଢ ବଚନ

**ହ**ରିଆ ହରିଭକ୍ତ । ନାମ ସଂକୀର୍ତ୍ତନରେ ସେ ବିଭୋଳ । ପଞ୍ଚ ପଞ୍ଚାଣୀରେ ତାର ଉପାସ । ସେଦିନ ଜଳ ବି ସ୍ପର୍ଶ କରେନାହିଁ । ଶରୀର ତାର କ୍ଷୀଣ । ଉପବାସ ତାକୁ ବହୁତ ବାଧେ । ସେ ଝାଉଁଳି ପଡ଼େ । ସ୍ତ୍ରୀ ତାର ବରଦାସ୍ତ କରିପାରେ ନାହିଁ । ଖାଇବାପାଇଁ ବାଧ୍ୟ କରେ । ସ୍ତ୍ରୀ ବାଧ୍ୟରେ ସେ ଦି'ଟା ଖାଏ । କିନ୍ତୁ ଖୁବ୍ ବିରକ୍ତ ହୁଏ ।

ଦିନକର କଥା । ହରିଆର ସେଦିନ ଉପାସ । ସ୍ତ୍ରୀ ତାକୁ ଯେତେ ନେହୁରିହୋଇ କହିଲା, ସେ ଶୁଣିଲା ନାହିଁ । ସ୍ତ୍ରୀ ବି ନଛୋଡ଼ ବନ୍ଧା । ହରିଆ ନଖାଇଲେ ସେ ଖାଇବ ନାହିଁ ବୋଲି ପ୍ରତିଜ୍ଞା କଲା । ସତକୁସତ ଦିନେ ଉପାସ ବି ରହିଗଲା । ତାର ବି ସ୍ୱାସ୍ଥ୍ୟ ଭଲ ନୁହେଁ । ଅତି ଖରାପ । ହରିଆର ଚେତା ପଶିଲା । ଭାବିଲା— ହରିଭକ୍ତି ଏକ ପ୍ରେମ । ପ୍ରେମରେ ଭୋକ ଶୋଷ ଭୁଲି ହୋଇଯାଏ । କିନ୍ତୁ ପ୍ରତିବାଦ ପାଇଁ ଉପାସ ହିଂସା ପ୍ରଣୋଦିତ । ଶ୍ରଦ୍ଧାହୀନ । ରାଗ ଦ୍ୱେଷ ପୂର୍ଣ୍ଣ । ଉପାସ ଶରୀରକୁ ଖୁବ୍ ବାଧେ । ସ୍ତ୍ରୀ ତାର ଜିଦ୍‌ରେ ଉପାସ କରୁଛି । ତାକୁ ନିଶ୍ଚେ ବାଧୁଥିବ । ସବୁ ଧର୍ମ କହେ ପରକୁ କଷ୍ଟ ଦେବା ଅନୁଚିତ । ସେ ସ୍ତ୍ରୀକୁ କଷ୍ଟ ଦେଇ ଧର୍ମ ଉପାର୍ଜ୍ଜନ କରିବ ନାହିଁ ବରଂ ଏଥିରେ ଅଧର୍ମ ହେବ । ସେଥିପାଇଁ ସ୍ତ୍ରୀକୁ ଡାକି କହିଲା, "ଖାଇବାକୁ ଆଣ । ଏଥର ଉପାସ କଲେ, କାହା-କଥା ଶୁଣିବି ନାହିଁ ! ତମ କଥା ବି ରଖିବି ନାହିଁ । ହରି ଖାଇବାକୁ ନଦେଲେ ଖାଇବି ନାହିଁ ।"

ହରିଆର କଥା ଶୁଣି ସ୍ତ୍ରୀ ତାର ହସିପକାଇଲା । କହିଲା, 'ଆଚ୍ଛା ଅଭିଆଣ କଥା, ତୁମେ କହୁଛ । କାନ ହେଲା ଦିନଠାରୁ

ମୁଁ ଏକଥା ଶୁଣିନାହିଁ । ଶୁଣିଛି—'ଭକ୍ତର ଭଗବାନ' । ଭକ୍ତର ଗୁହାରି ସେ ଶୁଣନ୍ତି । ଆପଣ ବିପଦରେ ସାହା ହୁଅନ୍ତି । ଏମିତିକି ନିଜେ ଆସି ତାଙ୍କୁ ରକ୍ଷା କରନ୍ତି । କାହାକୁ ଖୁଆଇ ଦେବା କଥା ତ ମୁଁ ଏପର୍ଯ୍ୟନ୍ତ ଜାଣିନାହିଁ ।'

ହରିଆ କହିଲା, "ହଉ ! ଏଥର କାହା କଥା ଠିକ୍ ଜାଣିବ । ମୁଁ ଉପାସ ଦିନ ଏଠି ରହିଲେ ସିନା, ଜବରଦସ୍ତି କରି ଖୁଆଇବେ । ମୁଁ ଯଦି ନଥିବି, ତମେ କ'ଣ କରିବ ?"

ହରିଆ ଘର ଛାଡ଼ି ଯିବା କଥା ଶୁଣି ସ୍ତ୍ରୀ ତାର ଡରିଗଲା । କିଛି କହିଲା ନାହିଁ । କାମ ବାହାନାରେ ସେଠୁ ଖସି ଚାଲିଗଲା ।

ହରିଆ ଏକଜିଦିଆ । ଯାହା ବୁଝିଥିବ ସେଇଆ । ଟିକିଏ ବି ମତ ବଦଳାଏ ନାହିଁ । ପରବର୍ତ୍ତୀ ଉପାସ ଦିନ ରାତିରୁ ଉଠି ସେ ନିତ୍ୟକର୍ମ ସାରିଲା । କାହାକୁ କିଛି ନ କହି ଜଙ୍ଗଲକୁ ଚାଲିଗଲା ।

ସେତେବେଳକୁ ପାହାନ୍ତିଆ । ସେ ଜଙ୍ଗଲିଆ ରାସ୍ତାରେ ଯାଉ ଯାଉ ଏକ ବିରାଟ ଗଛ ଦେଖିଲା । ତାର ଡ଼ାହିଗୁଡ଼ିକ ବେଶ ମୋଟା । ତାହି ସନ୍ଧିଟି ଖୁବ୍ ପ୍ରଶସ୍ତ । ବସିଲେ ପଡ଼ିବାର ସମ୍ଭାବନା କମ୍ । ବାହାରୁ ବି ସହଜେ ଦେଖାଯିବ ନାହିଁ । ହେଳା ନ କରି ସେଇ ଗଛଟିରେ ସେ ଚଢ଼ିଲା । ମୋଟା ଡ଼ାହିଟିଏ ଦେଖି ତା ସନ୍ଧିରେ ବସିଲା ।

ସେଇଠି ସେ ବସି ହରିନାମ ଜପୁଥାଏ । ସକାଳ ବେଳାଟି ଯାଇ ଦ୍ୱିପ୍ରହର ହେଲା । ସେ ପର୍ଯ୍ୟନ୍ତ କାହାରି ଦେଖାନାହିଁ । ସେତେବେଳକୁ ଖରା ଭାରି ଟାଣ । ବାଟୋଇଟିଏ ଆସି ଗଛମୂଳେ ପହଞ୍ଚିଲା । ଖରାରେ ଝାଉଁଳ ପଡ଼ୁଥାଏ । ବାଟ ଚାଲିରେ ସେ ହାଲିଆ । ଆଗକୁ ଚାଲିବାକୁ ତାର ଗୋଡ଼ ଚଳୁନାହିଁ । ହାତରେ ଝୁଲାଟିଏ । ସେଥିରୁ ପରଟା ପଦାକୁ ଦେଖାଯାଉଥାଏ । ସେ

ବୁଜୁଲିଟିକୁ ସେଇ ଗଛର ଗୋଟିଏ ଡାଳରେ ବାନ୍ଧିଦେଇ ଗଛମୂଳେ ବସିପଡ଼ିଲା ।

ଶୀତଳ ପବନ ବାଜିବାରୁ ସେ ଢୁଳେଇଲା । ଆଖିରେ ତାର ଆଖିଏ ନିଦ । ତା ପରେ ନିଦଘୋଡ଼ ନିଦରେ ସେ ସେଇଠି ଶୋଇଗଲା । ଉଠିଲାବେଳକୁ ବେଳ ଆଖର । ଦେଖିଲା, ସେ ବହୁତ ସମୟ ଶୋଇପଡ଼ିଛି । ଡେରି ହୋଇଯିବାରୁ ସେ ଗୁନିଆ । ଆଉ ହେଳା ନ କରି ସେ ଧାଇଁଲା । ଗଲାବେଳେ ବୁଜୁଲିଟିକୁ ନେବାକୁ ସେ ଭୁଲିଗଲା ।

ହରିଆ ଗଛ ଉପରୁ ସବୁ ଦେଖୁଥାଏ । ତାର ପେଟରେ ଭୋକ । ଆଖି ଆଗରେ ପରଠା । କେହି ଦେଖିବାକୁ ନାହିଁ । ମଣିଷ ମନ ତ ! ପରଠା ଖାଇବାକୁ ତାର ଭାରି ଇଚ୍ଛା ହେଲା । ପର-ମୁହୂର୍ତ୍ତରେ ହରିଆ ଭାବିଲା, ଭଗବାନ ସବୁଠି ଅଛନ୍ତି । ସେ ସବୁ ବି ଦେଖନ୍ତି । ମଣିଷକୁ ଯିନା ଏଡ଼େଇ ହେବ, ଭଗବାନଙ୍କୁ ଏଡ଼େଇ ହୁଆଯାଇ ପାରିବ ନାହିଁ । ତେଣୁ ସେଠୁ ସେ ଟିକିଏ ଚହଲିଲା ନାହିଁ । ପରଠା ଆଡ଼କୁ ଆଉ ଅନାଇଲା ବି ନାହିଁ ।

ଏହା ଭିତରେ ସନ୍ଧ୍ୟା ଆସିଯାଇଛି । ଦଳେ ଡାକୁ ସେଇ ବାଟେ ଯାଉଥିଲେ । ବୁଜୁଲିଟିକୁ ଦେଖି ସେଠି ଅଟକିଗଲେ । ଜଣେ ବୁଜୁଲିଟିକୁ ଆଣି ଖୋଲିଲା । ପରଠା ସେଥିରେ ଥିବାର ଦେଖି ସମସ୍ତେ ଭାରି ଖୁସି । ସାଙ୍ଗେ ସାଙ୍ଗେ ଖାଇବାକୁ ବସିପଡ଼ିଲେ ।

ସର୍ଦ୍ଦାର ଏକଥା ଦେଖି ଗର୍ଜିଉଠିଲା—"ବନ୍ଦ କର । ପରଠା ଖାଇବା ବନ୍ଦକର । କିଏ କାହିଁକି ଜଙ୍ଗଲରେ ପରଠା ଛାଡ଼ିକରି ଯିବ ? ଯେ ରଖିଛି, ତାର ମତଲବ ଖରାପ । ପରଠାରେ ବିଷଦେଇ ରଖିଛି, ଏଇଟା ତାର ଗୋଟାଏ ଫାଶ । ବାଟୋଇ ଏବାଟେ ଗଲାବେଳେ ପରଠାକୁ ଦେଖିବ । ଲୋଭେଇ ବିଷ ପରଠାକୁ

ଖାଇବ । ଛଟପଟ ହୋଇ ମରିବ । ପରଟା ରଖିଥିବାଲୋ ବାଟୋଇର ସମ୍ପତ୍ତି ନେବ ।”

କଥାଟା ଅନ୍ୟ ଡାକୁମାନଙ୍କ ମନକୁ ବେଶ୍ ପାଇଲା । ଏ ବିଷୟରେ ବିସ୍ତର ଆଲୋଚନା ବି ହେଲା । ଶେଷକୁ ସ୍ଥିର ହେଲା, ଯେ ପରଟା ରଖିଛି, ବାଟୋଇର ସମ୍ପତ୍ତି ଲୁଣ୍ଠନ ତାର ଲକ୍ଷ୍ୟ । ତେଣୁ ସେ ଏଇଠି କେଉଁଠି ଲୁଚିକରି ବସିଥିବ । ଖୋଜିଲେ ନିଶ୍ଚୟ ମିଳିବ ।

ସବୁ ଡାକୁମାନେ ଗଛ ଗୁହିପଟେ ତନ୍ନ ତନ୍ନ କରି ଖୋଜିଲେ । କିନ୍ତୁ କାହାକୁ ପାଇଲେ ନାହିଁ । କଥାହେଲା, ଲୋକଟା ଯଦି ତଳେ କେଉଁଠି ନାହିଁ, ଗଛରେ ଥାଇପାରେ । ତେଣୁ ସମସ୍ତେ ଗଛକୁ ଉଣ୍ଡିଲେ । ଶେଷରେ ହରିଆକୁ ସେମାନେ ଠାବ କଲେ । ହରିଆକୁ ତଳକୁ ଓହ୍ଲାଇବାକୁ ନିର୍ଦ୍ଦେଶ ଦେଲେ । ସେମାନଙ୍କ କଥାବାର୍ତ୍ତା ତ ସେ ଶୁଣିଥିଲା । ତାଙ୍କ ଗର୍ଜନ ଶୁଣି ସେ ଡରିଗଲା । ନ ଓହ୍ଲାଇଲେ ବିପତ୍ତି ବେଶୀ । ଏହାଭାବି ଧୀରେ ଧୀରେ ତଳକୁ ଆସିଲା ।

ସର୍ଦ୍ଦାର କହିଲା, “ଯେ ଗାତ ଖୋଳିଛି, ତାକୁ ସେଇଥିରେ ପକାଇଲେ ବେଶ୍ ମଜ୍ଜା ହେବ । ହରିଆକୁ ପରଟା ଖୁଆଯାଉ । ବିଷ ପରଟା ଖାଇ ସେ ଛଟପଟ ହୋଇ ମରୁ ।”

ହରିଆକୁ ପରଟା ଖାଇବାକୁ ସେମାନେ ଆଦେଶ ଦେଲେ । ହରିଆ ଉପରେ ଗୁନିଆ ସତ, ହେଲେ ତା ପଣ ଭାଙ୍ଗିବାକୁ ସେ ଅରାଜି । ସେଥିପାଇଁ ସେ ସିଧା ସିଧା ଖାଇବାକୁ ମନା କରିଦେଲା । ହରିଆର କଥା ଶୁଣି ଡାକୁମାନଙ୍କର ବିଶ୍ୱାସ ହେଲା, ହରିଆ ନିଶ୍ଚୟ ପରଟାରେ ବିଷ ମିଶେଇଛି । ବାଟୋଇକୁ ମାରି ସମ୍ପତ୍ତି ନେବାର ମତଲବ ଏହା ପଛରେ ଅଛି । ଡାକୁମାନଙ୍କର ଆଉ ଧୈର୍ଯ୍ୟ

ନଥିଲା । ବେଶ୍ ଉତ୍ତମ ମଧ୍ୟମ ଦି'ଟା ହରିଆକୁ ଦେଲେ । ତାପରେ ପରଟା ଖାଇବା ପାଇଁ ପାଟିରେ ଗୁଞ୍ଜିଲେ । ପିଠିରେ ଦୁମ୍‌ଦାମ୍ ବି ବସୁଥାଏ । ହରିଆ ଆଉ ସହି ପାରିଲା ନାହିଁ । ପରଟା ଖାଇବାକୁ ଆରମ୍ଭ କରିଦେଲା । ଗାଉଁ ଗାଉଁ କରି ପରଟାତକ ସବୁ ଗିଳି ପକାଇଲା ।

ପରଟା ଖିଆ ସରିବାରୁ ମାଡ ବନ୍ଦ ହେଲା । ସରଦାରଙ୍କ ଆଦେଶରେ ଡ଼ାକୁମାନେ ପଳାଇଲେ । ହରିଆ ଗୋଟିଏ ଗୋଟିଏ ହୋଇ ଘରକୁ ଫେରିଲା ।

—❋—

## କାଣ

ଦୁଇଟି ବନ୍ଧୁ ! ସେମାନେ ଦିନେ ଆଲୋଚନାରେ ବ୍ୟସ୍ତ । ଆଲୋଚନାରେ ବିଷୟବସ୍ତୁ—ଭାଗ୍ୟରେ ଥିଲେ ମିଳେ । ଅନ୍ୟଜଣକ କହିଲା—"ତୋ କଥା ସତ । କିନ୍ତୁ ସେଥିପାଇଁ ଉଦ୍ୟମ ଦରକାର ।" ପ୍ରଥମ ଜଣକ ରାଜି ହେଲା ନାହିଁ । ବହୁ ସମୟଧରି ଯୁକ୍ତିତର୍କ ଚାଲିଲା । କିନ୍ତୁ କିଛି ଲାଭ ହେଲାନାହିଁ । ଶେଷକୁ ପ୍ରଥମ ଜଣକ କହିଲା "ମୁଁ ମୋ ମତରେ ଖୁବ୍ ଦୃଢ଼ । ତେଣୁ ମୁଁ ତାହା ପରୀକ୍ଷା କରି ତତେ ଦେଖାଇ ଦେବି ।" ଦ୍ୱିତୀୟ ବନ୍ଧୁ ଏଥିରେ ରାଜି ହୋଇଗଲା ।

ପାଖରେ ଗୋଟିଏ ଧର୍ମଶାଳା । ତାର ଗୋଟିଏ କଣ ଭାରି ନିଗୁଟିଆ । ସେଠିକୁ ପ୍ରାୟ କେହି କେବେହେଲେ ଯାଆନ୍ତି ନାହିଁ । କଥା ହେଲା—ପ୍ରଥମ ବନ୍ଧୁଟି ସେଇଠି ବସିବ । କାହାକୁ କିଛି କହିବ ନାହିଁ । ତାକୁ ଯଦି ସେମିତି ଖାଇବାକୁ ମିଳିବ, ସେ ଠିକ୍ । ନଚେତ୍ ଆର ବନ୍ଧୁ ଜଣକ ଠିକ୍ ।

କଥାନୁସାରେ ତା’ ପରଦିନ ସକାଳୁ ଦୁଇବନ୍ଧୁ ସେଠାକୁ ଗଲେ । ପ୍ରଥମ ବନ୍ଧୁଟି ସେଇଠି ବସି ରହିଲା । ଦୂରରେ ଆର ବନ୍ଧୁଟି ଅପେକ୍ଷା କଲା । ସେ ଦିନ ଧର୍ମଶାଳାରେ ଭାରି ଭିଡ଼ । ବହୁତ ଲୋକ ଆସିଥାଆନ୍ତି । ସେମାନେ ସମସ୍ତେ ଖାଇପିଇ ଚାଲି-ଗଲେ । ଅଥଚ ସେ ପଟକୁ କେହି ଗଲେ ନାହିଁ । ଦିନଯାକ ପ୍ରଥମ ବନ୍ଧୁଟି ଉପାସରେ ବସି ରହିଲା ।

ଦ୍ୱିତୀୟ ଦିନ ପରିବର୍ତ୍ତନର ସୂଚନା ବି ନାହିଁ । ସେତେବେଳକୁ ସନ୍ଧ୍ୟା । ଯାତ୍ରୀ ଦଳଟିଏ ଆସିଲେ । ସେମାନେ ଖାଇବା ପାଇଁ ଜାଗା ଖୋଜୁଥାନ୍ତି । ଶେଷକୁ ପ୍ରଥମ ବନ୍ଧୁ ବସିଥିବା ନଗୁଣ୍ଠିଆ ଜାଗାଟିକୁ ବାଛିଲେ । ସେଠି ଖିଆପିଆ ବି ହେଲା । କିନ୍ତୁ କେହି ଜଣେ ହେଲେ ପ୍ରଥମବନ୍ଧୁ ଆଡ଼କୁ ଚାହିଁ ବି କଲେନାହିଁ । ସେ ଦିନଟି ତାର ଉପାସରେ ଚାଲିଗଲା ।

ତୃତୀୟ ଦିନ । ପ୍ରଥମ ବନ୍ଧୁଟି ଭୋକରେ ଆଉଟୁ ପାଉଟୁ । ଦ୍ୱିତୀୟ ବନ୍ଧୁଟି ଆସି କହିଲା—“ଜଣାଗଲା, ତୋ ମତ ଭୁଲ୍ । ଆଉ ଅପେକ୍ଷା କରି ଲାଭ ନାହିଁ । ତିନିଦିନ ହୋଇଗଲା, ତୁ ଖାଡ଼ା ଖାଡ଼ା ଉପାସ । ଆଉ ଅପେକ୍ଷା କର ନାହିଁ । କଲେ, ଦେହକୁ ବେଶ୍ ବାଧିବ ।”

ସମସ୍ତଙ୍କର ଆତ୍ମସମ୍ମାନ ଅଛି । କେହି କାହା ମତକୁ ଭୁଲ୍ ବୋଲି ସ୍ୱୀକାର କରିବାକୁ ରାଜି ହୁଅନ୍ତି ନାହିଁ । ଏହା ସାଧାରଣ ମଣିଷର ପ୍ରକୃତି । ପ୍ରଥମ ବନ୍ଧୁଟି ତାର ବ୍ୟତିକ୍ରମ ନୁହେଁ । ତେଣୁ ସେ ତାର ବନ୍ଧୁ କଥାରେ ରାଜି ହେଲା ନାହିଁ ବରଂ ସେଇ ଦିନଟିକୁ ଅନ୍ତତଃ ଅପେକ୍ଷା କରିବାକୁ କହିଲା ।

ସନ୍ଧ୍ୟା ହେବାକୁ ଅଳ୍ପ ସମୟ ବାକି । ଏତିକିବେଳେ ଦଳେ ଯାତ୍ରୀ ଭୋଜି କରିବାକୁ ଆସିଲେ । ନଗୁଣ୍ଠିଆ ଜାଗାଟିଏ ତାଙ୍କର

ଦରକାର । ବାଛି ବାଛି ଏଇ ଜାଗାଟିକୁ ମନୋମୀତ କଲେ । ସାଥି ସାଥି ଆୟୋଜନ ଚାଲିଲା । କିଛି ସମୟ ପରେ ରନ୍ଧାବଢ଼ା ସରିଗଲା । ସମସ୍ତେ ଧୋଇଧାଇ ହୋଇ ଆସି ବସିଗଲେ । ବଢ଼ା ହେବାକୁ ଯାହା ଆଉ ବାକିଥାଏ ।

ଉପବାସୀ ନିଜକୁ ଆଉ ସମ୍ଭାଳି ପାରିଲା ନାହିଁ । ସେମାନେ ତାକୁ ଖାଇବାକୁ ନ ଦେଲେ, ତାକୁ ତ କଷ୍ଟ ହେବ । ତା'ଛଡ଼ା ନିଜର କଥା ଭୁଲ ବୋଲି ତାକୁ ସ୍ୱୀକାର କରିବାକୁ ହେବ । ଯେମିତି ହେଲେ ସେମାନଙ୍କଠାରୁ କିଛି ଖାଇବ ବୋଲି ସ୍ଥିରକଲା । ଏକଥା ଚିନ୍ତା ସିନା କରୁଥାଏ, କିନ୍ତୁ କ'ଣ କରିବାକୁ ହେବ ଜାଣିପାରୁ ନ ଥାଏ ।

ବଢ଼ାବଢ଼ି ଆରମ୍ଭ ହୋଇଗଲା । ସମସ୍ତେ ପଙ୍‌କ୍ତିପାଖେ ବସିଲେଣି । ତା'ପ୍ରତି କାହାର ନଜର ନାହିଁ । ସେ କିଂକର୍ତ୍ତବ୍ୟ ବିମୂଢ଼ । ଆଉ ଡେରିକର ଲାଭ ନାହିଁ । ତା' ଅବସ୍ଥା ତାଙ୍କ ଜଣେଇବାକୁ ହେବ । ନିଜେ ଉଠିଯାଇ କହିବା ଅସୁନ୍ଦର । ଭାବିଲା, ଦୃଷ୍ଟି ଆକର୍ଷଣ କରିବ । ଯାହା ଭାଗ୍ୟରେ ଥିବ । ସେଥିପାଇଁ ଖଣ୍ଡିଏ କାଶିଟିଏ ଦେଲା ।

ସେତ ଆଡ଼ୁଆଳରେ ଗୋଟିଏ କଣକୁ ବସିଥିଲା । ଏପର୍ଯ୍ୟନ୍ତ ତାକୁ କେହି ଦେଖିବ ନଥିଲେ । ସେ କାଶିବାରୁ ଯାତ୍ରୀମାନଙ୍କ ଆଖି ତା ଉପରେ ପଡ଼ିଲା । ସେମାନେ ଦେଖିଲେ ନିଚ୍ଛାଟିଆ ଜାଗାରେ ଜଣେ ଲୋକ ବସିଛି । ମୁହଁଟି ତା'ର ଶୁଖିଲା । ସେ ଯେ ଦୁଇ ତିନି ଦିନ ଉପବାସୀ, ଏହା ତାହା ଚେହେରାରୁ ଜଣାପଡ଼ୁଛି । ତାର ଚାହାଣୀ ବିକଳ, ଅନୁନୟଭରା ।

ସେମାନଙ୍କ ମନ ତରଳିଗଲା । ସେମାନେ ଏତେ ଲୋକ ଖାଇବେ, ଅଥଚ ଜଣେ ଉପାସରେ ସେଠି ବସି ରହିଥିବ । ପୁଣି

ତାଙ୍କ ଆଡ଼କୁ ଆକୁଳ ନୟନରେ ଚାହିଁଥିବ । ଏକଥା ତାଙ୍କରମନକୁ ପାଇଲା ନାହିଁ । ସେମାନେ ପରସ୍ପର କଥାବାର୍ତ୍ତା ହେଲେ । ଜଣେ କିଛି ରୁଟି ଓ ତରକାରୀ ଆଣି ତା ପାଖରେ ରଖି ତାକୁ ଖାଇବାକୁ ଅନୁରୋଧ କଲା ।

ତା' ପରେ ସମସ୍ତେ ହାତ ଚଳାଇଲେ । ସେ ବି ତା'ଭିତରେ ଜଣେ । ଖିଆପିଆ ସରିଲା । ସମସ୍ତେ ବିଦା ହୋଇଗଲେ । ପ୍ରଥମ ବନ୍ଧୁଟି ସେଠୁ ଦ୍ୱିତୀୟ ବନ୍ଧୁ ପାଖକୁ ଆସି କହିଲା, "ତୋ କଥା ସତ୍ୟ । ଭାଗ୍ୟରେ ଥିଲେ ମିଳେ । ସେଥିପାଇଁ ସାମାନ୍ୟ ଉଦ୍ୟମ ବି ଦରକାର । ଏମିତିକ ଖଣ୍ଡିକାଶ ସେଥିପାଇଁ ଯଥେଷ୍ଟ ।"



## ରୂପମତୀ

ଚନ୍ଦ୍ରବନ ତଳେ ଜଣେ ରାଜା ଥିଲେ । ସେ ଯୁବକ । ଅବିବାହିତ । ଥରେ ସେ ପାରଧିକି ଯାଉଥିଲେ । ବାଟରେ ଗୋଟିଏ ଝିଅକୁ ଦେଖି ଅଟକିଗଲେ । ଝିଅଟି ଗୋଟିଏ ରାଉଳରେ ଗଢ଼ା । ଦେଖିବାକୁ ଭାରି ସୁନ୍ଦର । ସେଠି ଆଖି ତାଙ୍କ ଲାଖି ରହିଗଲା । ପାରିଧିକୁ ଗଲେ ନାହିଁ । ଉଆସକୁ ଫେରିଲେ । ମନ ତାଙ୍କର ଲାଗିଛି । ଝିଅଟିକୁ ଜାଣିବାକୁ ତାଙ୍କର ଆଗ୍ରହ ବହୁତ ।

ରାଜାଙ୍କ ଚାରିପଟେ ଲୋକେ ଘେରି ରହିଥା'ନ୍ତି । ରାଜାଙ୍କ ମନ ଲାଖି କାମ କରିବାକୁ ସେମାନେ ସବୁବେଳେ ଉଚ୍ଛନ୍ନ । ରାଜାଙ୍କର ମନ କଥା ସେମାନେ ଜାଣିଲେ । ଖବର ଦେଲେ, ଝିଅଟିର ନାଁ ରୂପମତୀ । ସେ ବିବାହିତା । ସ୍ୱାମୀ ତାର ସୌଦାଗର । ବିଦେଶକୁ ବଣିଜ ପାଇଁ ଯାଇଛି । ଘରେ ରୂପମତୀ ଏକାକୀ । ଚାକର ଚାକରାଣୀ ମେଳରେ ସେ ଥାଏ ।

ରାଜା ରୂପମଣି ସୌନ୍ଦର୍ଯ୍ୟରେ କେବଳ ମୁଗ୍ଧ ନୁହଁନ୍ତି, ପାଗଳ ମଧ୍ୟ । ରୂପମଣିଙ୍କୁ ବିବାହ କରିବା ତାଙ୍କର ଏକାନ୍ତ ଇଚ୍ଛା । ସେ ଯେ ବିବାହିତା, ସେଥିପାଇଁ ତାଙ୍କର ଭ୍ରୂକ୍ଷେପ ନ ଥିଲା । କିନ୍ତୁ ରୂପମଣିଙ୍କୁ ରାଜି କରାଇବାକୁ ହେବ । ନଇଲେ ଲୋକେ ଛି ଛାକର କରିବେ । ପ୍ରଜାକୁଳ ତବେ୍ରାଧ ବି କରିପାରନ୍ତି । ସେଥିପାଇଁ ରୂପମଣିଙ୍କୁ ସେ ଉଆସକୁ ଡକାଇଲେ ।

ଏ ଖବର ଅଗ୍ନିକଣ । ଗୃହଅଗ୍ନିକର, କିନ୍ତୁ ରାଜାଦେଶ । ପ୍ରତିବାଦ କଲେ ନିଶ୍ଚେ ଜେଲ ବା ମୃତ୍ୟୁଦଣ୍ଡ । ବ୍ୟତିକ୍ରମ ହେବ ନାହିଁ । ରୂପମଣି ସାଇପଡ଼ିଶାଙ୍କ ପରାମର୍ଶ ଲୋଡ଼ିଲା । ସମସ୍ତେ ଆସିଲେ । କିନ୍ତୁ ସେମାନେ ଭୟରେ କାତର । ଆଖି ସମସ୍ତଙ୍କର ତଳକୁ । ପାଟିରେ କଥା ନାହିଁ । କେହି ମୁହଁ ବି ଟେକିଲେ ନାହିଁ । ପରାମର୍ଶ ଦେବା ତ ଦୂରର କଥା ।

ରୂପମଣି ହତାଶ । ଉପାୟହୀନା । ରାଜାଦେଶ ଅମାନ୍ୟ ଭୟଙ୍କର । ବିପଦ ମଧ୍ୟ । ସେଥିରେ ସେ ଦୃଢ଼ । ବାଧ୍ୟ ଶୀଘ୍ରପରି ସେ ଉଆସକୁ ଆସିଲା ।

ଉଆସରେ ତାକୁ ସମ୍ବର୍ଦ୍ଧନା କରାଗଲା । ଆଶ୍ଚର୍ଯ୍ୟ କଥା । ଯାହା ଅତି, ତାହା ମନ୍ଦ । ଏକଥା ରୂପମଣି ଜାଣେ । ତେଣୁ ସମ୍ବର୍ଦ୍ଧନାରେ ସେ ଉଲ୍ଲସିତ ନୁହେଁ । ବରଂ ଦୁଃଖିତା । ରାଜା ତାକୁ ପାଖକୁ ଡାକି ବସାଇଲେ । ଏଣୁତେଣୁ ପଚାରି ପଚାରି ପରେ କହିଲେ, "ମୁଁ ଦେଖୁଛି ତୁମେ ଅପୂର୍ବ ସୁନ୍ଦରୀ । ଯୁବତୀ ବି । ସୌନ୍ଦର୍ଯ୍ୟ ଓ ଯୌବନ କ୍ଷଣସ୍ଥାୟୀ । କିନ୍ତୁ ଉପଭୋଗ୍ୟ । ନଚେତ୍, ଆପେ ଆପେ ନଷ୍ଟ ହୋଇଯିବ । ଠିକ୍ ସୁନ୍ଦର ଫୁଲପରି । ତମେ ବିବାହିତା ସତ; କିନ୍ତୁ ଏ ବିବାହ ବୃଥା । ସ୍ୱାମୀ ତମର ବୁଦ୍ଧିହୀନ । ଅପଦାର୍ଥ । ତମଭଳି ସୁନ୍ଦରୀ ସ୍ତ୍ରୀକୁ ଛାଡ଼ି ସେ ବିଦେଶରେ । କେବେ

ଫେରିବ ଠିକ୍‌ନାହିଁ । ହୁଏ ତ, ଫେରି ନପାରେ । ଫେରିଲେ ବି ତମର ଲାଭ ନାହିଁ । ସେ ବାଣିଜ୍ୟ ପ୍ରିୟ । ଧନ ପ୍ରୟାସୀ । ଶ୍ରଦ୍ଧା, ସ୍ନେହ, ଉପଭୋଗ ତା'ପକ୍ଷେ ନିରର୍ଥକ । ଏପରି କ୍ଷେତ୍ରରେ ତୁମେ ସେଠି ରହି ଲାଭ ନାହିଁ । ତୁମର ସୌନ୍ଦର୍ଯ୍ୟ ଆଉ ଯୌବନ ବଣର ଫୁଲଭଳି ଝଡ଼ିପଡ଼ିବ । ଆପତ୍ତି ନ ଥିଲେ ତମେ ଉଆସକୁ ଆସିପାର । ଏବେ ବି ମୁଁ ଅବିବାହିତ । ତମକୁ ବିବାହ କରିବାକୁ ରାଜି । ତମେ ହେବ ଏ ଦେଶର ରାଣୀ । ତମେ ସୌନ୍ଦର୍ଯ୍ୟ ଓ ଯୌବନକୁ ପଳ ପଳ କରି ଉପଭୋଗ କରିପାରିବ ।"

ରୂପମଞ୍ଜି ସତୀ, ସାଧ୍ୱୀ, ପତିବ୍ରତା ଓ ଧର୍ମ ପରାୟଣା । ରାଜାଙ୍କର କଥା ତାକୁ ଦଂଶନ କରୁଥିଲା । ସେ ନାରୀଟିଏ । ପ୍ରତିବାଦ ଶକ୍ତି ରହିତା । ସାମାନ୍ୟ ବିରୋଧର ସୁରାକ୍ ବଳ ପ୍ରୟୋଗ ପାଇଁ ଯଥେଷ୍ଟ । ସେ ହେବ ତାଙ୍କ କାମନାର ଶିକାର । ନିଜର ଇଚ୍ଛା ମୂଲ୍ୟହୀନ । ଆହା କହିବାକୁ ସାହାସ କାହାର ନଥିବ ।

ରୂପମଞ୍ଜି ବୁଦ୍ଧିମତୀ । ଉପସ୍ଥିତ ବୁଦ୍ଧି ବି ତାର ପ୍ରବଳ । ସେ ଭାବିଲା, ଆଜି ଦେଖାଇ ଏଠୁ ନ ଗଲେ, ରକ୍ଷା ନାହିଁ । ତେଣୁ ସେ କହିଲା, "ମହାରାଜ ! ମୋ ସ୍ୱାମୀ ବିଦେଶ ଯାଇଛନ୍ତି । ଗଲାବେଳେ କଥା ଦେଇଗଲେ—ବର୍ଷକ ଭିତରେ ଫେରିବେ । ମୁଁ ଅପେକ୍ଷା କରିବାକୁ ପ୍ରତିଶ୍ରୁତି ଦେଇଛି । ଜବାବ ରକ୍ଷା କରିବା ମଣିଷତ୍ୱ । ଯେ ଜବାବ ଭଙ୍ଗକରେ, ସେ ମଣିଷ ପଦବାଚ୍ୟ ନୁହେଁ । ତେଣୁ ମତେ ବର୍ଷଟିଏ ଅପେକ୍ଷା କରିବାକୁ ହେବ । ମତେ ଦୟା କରନ୍ତୁ ମହାରାଜ । ମତେ ବର୍ଷଟିଏ ସମୟ ଦିଅନ୍ତୁ ।'

ତା କହିବା ଭଙ୍ଗୀରେ ଥିଲା କାରୁଣ୍ୟ । ଭାଷା ସରଳ । ସାବଲୀଳ । ହୃଦୟସ୍ପର୍ଶୀ । ରାଜ-ବିଶ୍ୱାସ ଯୋଗ୍ୟ । ରାଜାଙ୍କର

ହୃଦବୋଧ ହେଲା । ରାଜା ଦେଶରେ ରୂପମଣିଙ୍କୁ ନିରାପଦରେ ତା ଘରେ ପହଞ୍ଚାଇ ଦିଆଗଲା ।

ସମୟ କାହାକୁ ଅପେକ୍ଷା କରେ ନାହିଁ । ଗଡ଼ିଗଲେ, ଅବିରତ ଭାବରେ । ଏହା ଭିତରେ ଗୋଟିଏ ଗୋଟିଏ ବର୍ଷଟିଏ ବିତିଗଲା । କିନ୍ତୁ ସୌଦାଗର ଫେରିଲା ନାହିଁ । ରୂପମଣି ଚିନ୍ତିତ ।

ରାଜା ମଧ୍ୟ ଖବର ରଖୁଥାଆନ୍ତି । ସୌଦାଗର ନ ଆସିବାରେ ସେ ମହାଦୁଃଖି । ବର୍ଷ ସରିବାର ପରଦିନ । ଉଆସକୁ ଆସିବାକୁ ରୂପମଣିଙ୍କୁ ଖବର ଦିଆଗଲା ।

ରୂପମଣି ବୁଝୁଥାଏ । ଅସ୍ଥିର ହେଲେ ନିଜର ଆତ୍ମରକ୍ଷା କରିହେବ ନାହିଁ । ଡରିଲେ ବୁଦ୍ଧି ଆସେ ନାହିଁ । ତାକୁ ଦୃଢ଼ ହୋଇ ଉପାୟ ବାହାର କରିବାକୁ ହେବ । ସେଥିପାଇଁ ବାରମ୍ବାର ସେ ମସ୍ତକରେ ଆଘାତ କରୁଥାଏ । ତଥାପି କୌଣସି ବୁଦ୍ଧି ଆସୁ ନଥାଏ ।

ଡେରିକରି ଲାଭ ନାହିଁ । ଡେରି ହେଲେ, ରାଜା ମଧ୍ୟ ଭୁଲ୍ ବୁଝିପାରନ୍ତି । ତେଣୁ ସେ ଘରୁ ଗୋଡ଼କାଢ଼ିଲା । ଆଶ୍ଚର୍ଯ୍ୟର କଥା । ଦେଖିଲା ସ୍ୱାମୀ ତାର ଆସୁଛନ୍ତି । ମନରେ ତାଙ୍କର ଅସୀମ ଆନନ୍ଦ । ଗର୍ବରେ ମସ୍ତକ ଉନ୍ନତ । ପଛରେ ବିପଣୀର ଧାର । ଗଧଟଣା ଗାଡ଼ି । ନଦା ହୋଇଛି ଅସରନ୍ତି ସାମଗ୍ରୀ ।

ସେ ସେଇଠି ଅଟକିଗଲା । ସ୍ୱାମୀଙ୍କୁ ସମ୍ବର୍ଦ୍ଧନା ଜଣାଇ ଘରକୁ ପାଛୋଟି ନେଲା । ରୂପମଣିଙ୍କୁ ଦେଖି ସ୍ୱାମୀର ମହାଆନନ୍ଦ । କିନ୍ତୁ ରୂପମଣି ଆଖିରୁ ଅଶ୍ରୁଧାର ଅବାରିତ ଧାରାରେ ଗଡ଼ି ଚାଲିଥାଏ ।

ତାର ଆଗମନରେ ରୂପମଣି ଦୁଃଖିତ । ସେଥିପାଇଁ ସ୍ୱାମୀ ବ୍ୟସ୍ତ ଆଉ ବିବ୍ରତ । ଏକଥା ତା ହୃଦୟକୁ ବାଧିଲା । ହସ ତାର

ମଳିଗଲା ମୁହଁରେ ତାର ବିଷାଦର ଦାଗ । ସେ କିଛି ବୁଝିନପାରି କେବଳ ରୂପମଞ୍ଜିର ମୁହଁକୁ ଚାହିଁ ରହିଲା ।

ରୂପମଞ୍ଜି ସବୁ କଥା ଗୋଟି ଗୋଟି କରି କହିଲା । ସୌଦାଗର କିନ୍ତୁ କିଛି କହିଲା ନାହିଁ । ଭାବୁଥାଏ—ଯଦି ସ୍ତ୍ରୀକୁ ଉଆସକୁ ନଗଲେ, ରାଜାଙ୍କର ବିଷଦୃଷ୍ଟି ପଡ଼ିବ । ହୁଏତ, ଆଖି ପିଛୁଳାକେ ମାଡ଼ି ଆସିବେ ସୈନ୍ୟ ସାମନ୍ତ । ବାନ୍ଧିନେବେ ତାକୁ । ରୂପମଞ୍ଜିକୁ ବି । ଯଦି ଗଲେ, ଚିରଦିନ ପାଇଁ ରୂପମଞ୍ଜିକୁ ସେ ହରାଇବ । ଫଳରେ ତା ଜୀବନ ହେବ ଅସାର । ନିରର୍ଥକ । ଦୁର୍ବିସହ । ମରୁ ଝାଙ୍ଗରି ଭୂଇଁ ।

ଦୁଇଟିଯାକ ବିପଦ । ଉପାୟହୀନ । ସେଥିପାଇଁ ସେ ନିରୁତ୍ତର । ବାରମ୍ବାର ରୂପମଞ୍ଜିର ପ୍ରଶ୍ନ ତାକୁ ଅତିଷ୍ଠ କଲା । ସେ ହେଲା ବିବ୍ରତ । ଅଧୈର୍ଯ୍ୟ । ଆଖିକୁ ବନ୍ଦ କରି ସେ ବସି ରହିଲା । କୋହକୁ ଚାପିବା ପାଇଁ ଓଠକୁ ଚାପି ଧରିଥାଏ । ତଥାପି ଓଠ ତାର ଥରୁଥାଏ ।

ରୂପମଞ୍ଜି ଦେଖିଲା, ବେଳ ଗଡ଼ି ଆସୁଛି । ଡେରି ହେଲେ ବିପଦ । ସ୍ୱାମୀତାର ଅପାରଗ । ଏଥିରେ ସନ୍ଦେହ ନାହିଁ । କାନ୍ଦିଲେ ବାଧିବ । ଦୁଃଖ ବଢ଼ିବ । ଲାଭ କିଛି ହେବନାହିଁ । ବରଂ ସାହସ ଆଉ ଦୃଢ଼ତା ଦରକାର । ସେ ସ୍ୱାମୀକୁ ଭରସା ଦେଇ କହିଲା— 'ବ୍ୟସ୍ତ ହୁଅ ନାହିଁ । ମୁଁ ସବୁକଥା ବୁଝିବା'

ବଜାରରୁ ରୂପମଞ୍ଜି କିଛି ଅଣ୍ଡା ମଗାଇଲା । ସେ ଚିତ୍ରକର ତୁଳି ଆଉ ରଙ୍ଗନେଇ ଅଣ୍ଡା ସବୁକୁ ରଙ୍ଗାଇଲା । ସେତକ ସାଙ୍ଗରେ ଧରି ରାଜାଙ୍କ ଉଆସକୁ ବାହାରି ପଡ଼ିଲା ।

ରୂପମଞ୍ଜିକୁ ରାଜା ଅପେକ୍ଷା କରିଥାଆନ୍ତି । ମନଭିତରେ

ଭବିଷ୍ୟତର କେତେ କଳ୍ପନାର ଚିନ୍ତ । ନିଜକୁ ସେ ଭାଗ୍ୟବାନ ବୋଲି ବି ଭାବୁଥାଆନ୍ତି ।

ରୂପମଣି ଉଆସରେ ହଜାର । ତାର ଆଗମନରେ ରାଜା ଖୁସି । ତାକୁ ରାଣୀ ରାଣୀ ବୋଲି ଧରି ନେଇଥାଆନ୍ତି । ଅନ୍ତଃପୁରକୁ ସିଧା ତାକୁ ନିଆଗଲା ।

ରୂପମଣିର ସାଥିରେ ପରିଚାରିକା । ହାତରେ ତାର ରୂପାର ଏକ ଥାଳି । ତାହା ମୂଲ୍ୟବାନ ଭେଲ୍‌ଭେଟରେ ଆବୃତ । ଭେଲ-ଭେଟଟି ବହୁ କାରୁକାର୍ଯ୍ୟପୂର୍ଣ୍ଣ । ଲୋଭନୀୟ ।

ମନ ଅନୁସାରେ ଭାବନା । ରାଜା ତାକୁ ଦେଖି ଭାବୁଥାଆନ୍ତି, ତାଙ୍କ ପାଇଁ ଉପହାର । ସମ୍ମତିର ସୂଚକ । ସେଥିପାଇଁ ରାଜା ଆହୁରି ଖୁସି ।

ଆଦେଶ ପାଇ ରୁପମଣି ବସିଲା । ରାଜା ତାର ଖବର ଅନ୍ତର ନେଲେ । ତା'ପରେ ରୁପମଣି ଉଠି ପରିଚାରିକା ହାତରୁ ଥାଳିଟି ନେଇ ରାଜାଙ୍କ ସମ୍ମୁଖରେ ରଖିଲା । ଭେଲଭେଟ୍ ଘୋଡ଼ଣୀଟି ଖୋଲି ରାଜାଙ୍କୁ କହିଲା "ମହାରାଜ, ଏଇ ଅଣ୍ଡାତକ ଆପଣଙ୍କୁ ଭେଟି ଦେବାପାଇଁ ଆଣିଛି । ମୋ ନିଜ ହାତରେ ସେ ସବୁ ରନ୍ଧିତ । ଆପଣଙ୍କୁ ଏହା ଭିତରୁ ଯେଉଁଟି ସବୁଠୁ ବେଶୀ ଭଲ ଲାଗୁଛି, ସେଇଟି ବାଛନ୍ତୁ ।"

ରାଜା ତ ରୂପମଣିକୁ ଦେଖି ତନ୍ମୟ । ତାର ପ୍ରତି କଥା ତାଙ୍କ ପ୍ରାଣରେ ସ୍ପନ୍ଦନ ଆଣୁଥାଏ । ତେଣୁ ରୂପମଣି କଥାର ବିରୁଦ୍ଧାଚରଣ କରିବା ଅସମ୍ଭବ । ତା'ଛଡ଼ା, ରାଜା ଭାବୁଥିଲେ—ସେ ହେବ ରାଜ୍ୟର ରାଣୀ ରାଣୀ । ତେଣୁ ତା'କଥା ପାଳନୀୟ । ସେଥିପାଇଁ ରାଜା ମହାଆନନ୍ଦରେ ଅଣ୍ଡାଟିଏ ବାଛିବାକୁ ଲାଗିଲେ । ଘଡ଼କପରେ

ରାଜା ସୁନେଲି ରଙ୍ଗର ଅଣ୍ଡାଟିକୁ ଧରି ରୁପମଞ୍ଜୀ ହାତକୁ ଦେଲେ କହିଲେ "ଏଇଟି ମତେ ସବୁଠାରୁ ଭଲ ଲାଗୁଛି ।"

ସେଇଟିକୁ ରୁପମଞ୍ଜୀ ଗୋଟିଏ ପାଖରେ ରଖିଲା । ତାପରେ କହିଲା—"ମହାରାଜ ! ଆପଣଙ୍କୁ ସବୁଠାରୁ ଯେଉଁ ଅଣ୍ଡାଟି ଖରାପ ଲାଗୁଛି, ସେଇଟିକୁ ବାଛନ୍ତୁ । ରାଜା ବହୁତ ଚିନ୍ତା କଲା ପରେ କର୍ଦ୍ଦମ ରଙ୍ଗର ଅଣ୍ଡାଟିଏ ଧରିଲେ । ଏ ଅଣ୍ଡାଟି ଦେଖିଲେ ତାଙ୍କୁ ବିରକ୍ତ ଲାଗୁଛି ବୋଲି କହି ତାକୁ ରୁପମଞ୍ଜୀ ହାତକୁ ବଢ଼ାଇ-ଦେଲେ । ସେ ଅଣ୍ଡାଟି ରୁପମଞ୍ଜୀ ଆଉ ଗୋଟିଏ ପାଖରେ ରଖିଲା । ଅନ୍ୟ ଅଣ୍ଡା ସବୁ ଥିବା ଥାଳଟିକୁ ଉଠାଇ ନେବାପାଇଁ ପରିଚାରିକାକୁ ନିର୍ଦ୍ଦେଶ ଦେଲା ।

ବର୍ତ୍ତମାନ ରାଜାଙ୍କ ଆଗରେ ଦୁଇଟି ପାତ୍ର । ସେଥିରେ ତାଙ୍କୁ ଭଲ ଲାଗୁଥିବା ଓ ଖରାପ ଲାଗୁଥିବା ଅଣ୍ଡା ଦୁଇଟି । ଖରାପ ଅଣ୍ଡାଟିକୁ ଭାଙ୍ଗିବାକୁ ରୁପମଞ୍ଜୀ ଅନୁରୋଧ କଲା । ରାଜା ସେ ଅଣ୍ଡାଟିକୁ ଭାଙ୍ଗିଲେ । ତା' ଭିତରେ ଥିବା କ୍ଷୀରକୁ ରୁପମଞ୍ଜୀ ଗୋଟିଏ ପାତ୍ରରେ ରଖିଲା । ତା'ପରେ ପୁଣି ତାର ଅନୁରୋଧ ଭଲ ଅଣ୍ଡାଟିକୁ ଭାଙ୍ଗିବାକୁ । ରାଜା ତାକୁ ମଧ୍ୟ ଭାଙ୍ଗିଲେ । ରୁପମଞ୍ଜୀ ତାର ଭିତର ଅଂଶତକ ଆଉ ଗୋଟିଏ ପାତ୍ରରେ ରଖିଲା । ଖୋଳ ଦୁଇଟିକୁ ବାହାରକୁ ଫିଙ୍ଗି ଦେଲା ।

ରୁପମଞ୍ଜୀ ତାପରେ ପଚାରିଲା—"ମହାରାଜ ! ଅଣ୍ଡା ଦୁଇଟି ଭିନ୍ନ । ଗୋଟିଏ ସୁନ୍ଦର ଆଉ ଅନ୍ୟଟି କଦାକାର । କିନ୍ତୁ ଭିତରେ ଥିବା କ୍ଷୀରରେ କିଛି ଫରକ ଦେଖୁଛନ୍ତି କି ?"

ରାଜା କହିଲେ "ନାହିଁ ।"

ସେ ପଚାରିଲା—"ଖାଇଲେ ଏଥିର ସ୍ୱାଦ କ'ଣ ଅଲଗା ହେବ ?"

ରାଜା ଉତ୍ତର ଦେଲେ "ନା"

ତାପରେ ଉଭୟେ ନୀରବ । ସବୁ ଶାନ୍ତ । ସବୁ ସ୍ତବ୍ଧ । ରୂପମତୀର ଦୀର୍ଘଶ୍ୱାସଟି ନୀରବତାରେ ବ୍ୟାଘାତ ଆଣିଲା ।

ରୂପମତୀ ଧୀରେ ଧୀରେ ଆରମ୍ଭ କଲା "ମହାରାଜା ! ମୋତେ କ୍ଷମା କରନ୍ତୁ । ଆପଣଙ୍କ ଆଗରେ ମୁଁ ଗୋଟିଏ କଥା କହିବି । ଏହା ମୋର ଆସ୍ପର୍ଦ୍ଧା ବ୍ୟତୀତ ଆଉ କିଛି ନୁହେଁ । ସେଥି-ପାଇଁ ଆତୁର ଥରେ କ୍ଷମା ମାଗି ନେଉଛି । ଆପଣ ଅଣ୍ଡା ଦୁଇଟି ବାଛିଲେ । ରୂପ ତାର ଭିନ୍ନ, ଅଲଗା । ଗୋଟିଏ ଲୋଭନୀୟ । ଆକର୍ଷଣୀୟ, ଅନ୍ୟଟି କଦାକାର, ଘୃଣ୍ୟ । କିନ୍ତୁ ଉଭୟଙ୍କର ଭିତର ସମାନ । ଅଭିନ୍ନ । ସ୍ୱାଦ ବି ଏକା । ତେଣୁ ବାହାର ସହିତ ଭିତରର ସମ୍ପର୍କ ନାହିଁ । ଏହା ମଧ୍ୟ ନାରୀମାନଙ୍କ ପାଇଁ ପ୍ରଯୁଜ୍ୟ । ବାହାରକୁ ଦେଖିବାକୁ ସେମାନେ ଭିନ୍ନ । କିନ୍ତୁ ଭିତରେ ସବୁ ନାରୀ ସମାନ । ଫରକ କିଛି ନାହିଁ । ତେଣୁ ହଜୁର ଯେ କୌଣସି ସ୍ତ୍ରୀକୁ ବିବାହ କରିବା ଯାହା, ମତେ ବିବାହ କରିବା ସେଇଆ । କିନ୍ତୁ ମହାରାଜ । ଅନ୍ୟ ଅବିବାହିତା ଝିଅଟିଏ ବିବାହ କଲେ, ତାହାର କିଛି କ୍ଷତି ହେବ ନାହିଁ । ବରଂ ସେ ଆପଣଙ୍କୁ ବିବାହ କଲେ ଖୁସିହେବ । ତାର ବାପ ମା' ଓ ବନ୍ଧୁବାନ୍ଧବ ଏକ ରାଜଦସ୍ତୀ ପାଇଁ ଉପକୃତ ହେବେ । ମୋତେ ବିବାହ କଲେ, ସୌଦାଗର ବିଚରାଟି ହତାଶ ହେବ । ତାର ଘରସଂସାର ଜଳି ପୋଡ଼ି ପାଉଁଶ ହୋଇଯିବ । ଶେଷରେ ସେ ପାଗଳ ହୋଇଯାଇପାରେ । ଏଥିରୁ କଣ ବା ଲାଭ ଆପଣ ପାଇବେ ? ତାଛଡ଼ା ମହାରାଜ, ସେ ଆଜି ଫେରିଆସିଛି । ମୁଁ ତାର ଅନୁମତି ନେଇ ଏଠାକୁ ଆସିଛି । ମହାରାଜ ! ମୋ ସ୍ୱାମୀ ମୋତେ ଭଲପାଏ ।

ଖୁବ୍ ଭଲପାଏ । ଜୀବନଠାରୁ ଅଧିକ ସେ ମୋତେ ଭଲପାଏ । ମୋର ଅନୁନୟ ମହାରାଜ, ଆମର କ୍ଷତି କରନ୍ତୁ ନାହିଁ ।"

ରାଜା ଏ ସବୁ ଶୁଣି ସ୍ତମ୍ଭୀଭୂତ । ରୂପମଣିର ବୁଦ୍ଧି ଦେଖି ସେ ଚକିତ । ଖୁସି ବି ।

ରୂପମଣିର ଯୁକ୍ତି ଅଭ୍ରାନ୍ତ । ଅକାଟ୍ୟ । ଭାଷା ଆଉ କହିବାର ଭଙ୍ଗୀ ହୃଦୟସ୍ପର୍ଶୀ । ରାଜା ସେଥିରେ ମୁଗ୍ଧ । ନିଜର ଭ୍ରମ ବିଷୟରେ ଏବେ ସେ ସଚେତନ । ରୂପମଣିକୁ ବ୍ୟସ୍ତ ନ ହେବାକୁ ପରାମର୍ଶ ଦେଲେ । ଉପଯୁକ୍ତ ଉପଢୌକନ ଦେଇ ସସମ୍ମାନିତ କଲେ । ରକ୍ଷୀ ଗହଣରେ ଘରକୁ ସେ ଫେରିଆସିଲା ।



## ଠକାମି

ସୁଦୂର ଅତୀତର କଥା । ଜଣେ ଡାକୁ ପଞ୍ଜାବ ଭ୍ରମଣରେ ଆସିଥିଲା । ଦେଶ ତମାମ୍ ବୁଲି ସାରିଲା ପରେ ନିଜ ଦେଶକୁ ବାହାରିଲା । ଲୁଗା ତ ପଞ୍ଜାବରେ ଭାରି ଶସ୍ତା । ଗଲାବେଳକୁ ଚାରି ପାଞ୍ଚ ଟଙ୍କାର ଲୁଗା କିଣିବାକୁ ଇଚ୍ଛା କଲା ।

ରାସ୍ତାକଡ଼ରେ ବୁଢ଼ୀଟିଏ ବସି ଲୁଗା ବିକୁଥାଏ । ଡାକୁ ତା ପାଖକୁ ଯାଇ, ପାଞ୍ଚ ଟଙ୍କାର ଲୁଗା ମାଗିଲା । ବୁଢ଼ୀ କହିଲା, "ପୁଅରେ, ଲୁଗା ସିନା ବିକିବି ବୋଲି ବସିଛି । ହେଲେ ତରାଜୁ ନାହିଁ । ଗାଁ ଭିତରେ ଦୋକାନୀ ଅଛି । ତାଠାରୁ ତରାଜୁ ଆଉ ସାଜ ଆଣିଲେ, ଲୁଗା ନେଇଯିବୁ ।"

ବୁଢ଼ୀର କଥା ଶୁଣି ଡାକୁ ଭାରିଖୁସି । ଭାବିଲା, ଦୋକାନୀକୁ କିଛି ପଇସା ଦେଇ ଅକତିଆର କରିନେବି । ତାପରେ ଓଜନରେ

ବୁଢ଼ୀକୁ ଠକିଦେବ । ସେ ଗାଁକୁ ଗଲା । ଦୋକାନୀକୁ ଫୁସୁଲେଇଲା । ଦୋକାନୀ ବି ରାଜି । ସଲା ହୋଇ ଉଭୟେ ବୁଢ଼ୀପାଖକୁ ଆସିଲେ ।

ବୁଢ଼ୀ ପାଖରେ ପହଞ୍ଚି ଦୋକାନୀ ତୁଳା ଓଜନ କରିବାକୁ ବାହାରିଲା । ବୁଢ଼ୀ କହିଲା, "ନାଇଁ ପୁଅ, ତୁ କାହିଁକି ଓଜନ କରୁଛୁ ? ସେ ପୁଅ ତ ତୁଳା ନେବ । ତା ହାତରେ ସେ ଓଜନ କରିନେଉ ।"

ଡାକୁ କହିଲା "ମାଉସୀ ! ନିଜ ହାତରେ ଓଜନ କରି ନେଲେ, ତୋତେ ମୁଁ ଠକି ଦେବି । ତେଣୁ ଦୋକାନୀ ଓଜନ କରୁ ।"

ବୁଢ଼ୀର୍ ପାକୁଆ ପାଟିରେ ହସ । ସେ କହିଲା—"ପୁଅରେ ଏ ପୁରରେ ତୁ ଠକିଲେ, ଆର ପୁରରେ ତୁଇହିଁ ଶୁଝିବୁ । ତୋ ଛଡ଼ା ଆଉ କେହି ଶୁଝିବେ ନାହିଁ । ତେଣୁ ମୋର ଚିନ୍ତା ନାହିଁ । କେହି କାହାକୁ ସବୁଦିନ ପାଇଁ ଠକି ପାରନ୍ତି ନାହିଁ ।"

ଡାକୁଟି ଆଶ୍ଚର୍ଯ୍ୟ ! ବୁଢ଼ୀ କଥାରେ ତାର ବିଶ୍ୱାସ ହେଲା ନାହିଁ । ସେ ପଚାରିଲା—"କମିତି" ?

ବୁଢ଼ୀ କହିଲା "ଶୁଣରେ, ପୁଅ । ଯାହା କହୁଛି ତାହା ମୋର ଅଙ୍ଗେ ଲଗାଇବା କଥା । ଏକଥା କାହାଠାରୁ ଶୁଣି ନାହିଁ । ବହୁ-ଦିନ ତଳେ ମୋର ଝିଅଟିଏ ଥିଲା । ମୋର ଆଉ ପିଲା ପିଚିକା ନ ଥିଲେ । ତେଣୁ ତାକୁ ମୁଁ ଘର ଭଲ ପାଉଥିଲି । ସେଥିପାଇଁ ଘରଜ୍ୱାଇଁଆ କରି ତାକୁ ଘରେ ରଖିଲି । ଘରୁ ଅଧେ ବି ଦେଲି । ସେ ତାର ସ୍ୱାମୀକୁ ନେଇ ଘର ସଂସାର କଲା । ଦୁଇଟି ପିଲା ବି ହେଲେ । ମା' ପିଲା ମୋ ଘରେ ଅଧିକାଂଶ ସମୟ ଖାଆନ୍ତି । ରହନ୍ତି ବି ।

ମୋର ଗାଈଟିଏ ଥିଲା, ସେ ଜନ୍ମକଲା, ବାଛୁରି ମରିଯିବାରୁ ସେ ଆଉ ଦୁଧ ଦେଲା ନାହିଁ । ବୁଢ଼ୀ ଲୋକ ମୁଁ, ଘରପାଣି ପାରେନେ । ସନ୍ଧ୍ୟାବେଳେ ଠାକୁରଙ୍କୁ ଦୀପ ଦିଏ । ତେଣୁ ଘିଅ ଟିକକର ଦରକାର ମୋର ବେଶୀ । ଘରୁ ଘିଅ ସରି ଆସିଲା । ଘିଅ କିଣିବାର କଥା, ପଇସା ନ ଥାଏ । ସେତେବେଳକୁ ଝିଅର ଗାଈଟି ଦୁହାଁ ହେଉଥାଏ । ସେ ଘିଅ କରେ, ବିକେ ବି । ଝିଅ କହିଲା "ଆଲୋ ମା' ମୋଠୁ ସେରେ ଘିଅ ଧାର ନେଇଯା । ତୋର ଘିଅ ହେଲେ ମତେ ଦେଇଦେବୁ ।"

ଝିଅ କଥାରେ ରାଜି ହେଲି । ଘିଅ ବି ଆଣିଲି । କହିଲି— "ଆରଫଳକୁ ମୋର ଗାଈ ଜନ୍ମକଲେ, ଘିଅତକ ଶୁଝିଦେବି ।"

ତା'ର ଅଳ୍ପଦିନ ପରେ ଝିଅଟି ମୋର ମରିଗଲା । ଝିଅପାଇଁ ବହୁତ କାନ୍ଦିଲି । ଗୋଟିଏ ବୋଲି ଝିଅ । ନୟନର ପିତୁଳା । ତାର ମୃତ୍ୟୁପରେ ମୁଁ ପାଗଳ ହୋଇଗଲି । ସବୁବେଳେ ଝିଅ ଚିନ୍ତା । କେତେଦିନ ଏମିତି ଚାଲିଗଲା । ମୁଁ ଥରେ ଆରପୁରକୁ ଯାଇଥିଲି । ସେଠି ଝିଅ ମୋତେ ଦେଖିଲା । ମୁଁ ତାକୁ ଦେଖି ଭାରି ଖୁସି । ତାକୁ ଛାଡ଼ି ଆସିବାକୁ ମୋର ମନ ହେଉ ନ ଥାଏ । କିନ୍ତୁ ସେଠିତ ରହି-ହେବ ନାହିଁ । ଆସିବାକୁ ବାଧ୍ୟ ବାହାରିଲି । ଝିଅ କହିଲା "ଭଲତ ଯାଉଛୁ, ମୋତେ ମୋ ଘିଅ କିଏ ଦେବ ? ଘିଅ ନ ଦେଲେ ମୁଁ ଛାଡ଼ିବି ନାହିଁ ।" ମୁଁ କହିଲି "ତୋ ସ୍ୱାମୀ ତ ମୋ ପାଖରେ ରହୁଛି । ମୁଁ ତାକୁ ତୋ' ଘିଅ ଦେଇଦେବି ।"

ସେ ହସି ହସି କହିଲା—"ମୁଁ ତ ଏ ପାରିରେ । ତା ସାଥିରେ ମୋର ଆଉ ସମ୍ପର୍କ କ'ଣ ? ମୋଠୁ ନେଇଥିଲୁ, ମତେ ଦେବୁ । ଆଉ କାହାକୁ ଦେବାକଥା ଉଠୁ ନାହିଁ । ନ ଦେଲେ ମୁଁ ତତେ ଯିବାକୁ ଦେବି ନାହିଁ ।"

ମୋ ପାଖରେ ତ କିଛି ନ ଥିଲା । ମୁଁ ତେଣୁ କହିଲି ମୋ ପାଖରେ ତ କିଛି ନାହିଁ । କେମିତି ତୋତେ ଶୁଝିବି । ସେ କହିଲା —ଘିଅ ନ ଦେଇ ପାରିଲେ, ତୋ ଦେହରୁ ସେରେ ମାଂସ ଦେଇ ଦେଉନୁ ।

ମୁଁ ଆଶ୍ଚର୍ଯ୍ୟ ! ଘିଅ ମୋ ଦେହରୁ ମାଂସ ମାଗିପାରେ ! ମୁଁ ବିଶ୍ୱାସ କରିପାରିଲି ନାହିଁ । ଭାବିଲି, ଘିଅ କଣ ସତରେ ମାଂସ ମୋ ଦେହରୁ ନେବ । କେବେହେଲେ ତା ହାତ ଯିବ ନାହିଁ । ସେଥିପାଇଁ ରାଜି ହୋଇଗଲି ।

କିନ୍ତୁ ସତକୁ ସତ, ଘିଅ ମୋର ଜଙ୍ଘରୁ ମାଂସ ସେରେ କାଟି ନେଇଗଲା । ଦେଖୁନ ଜଙ୍ଘରେ ଏବେ ବି ନେ ଗାତଟି ଅଛି । ବୁଢ଼ୀ ଏହା କହି ଲୁଗାଟେକି ଡାକୁକୁ ଦେଖାଇ ଦେଲା । ସତକୁ ସତ ଜଙ୍ଘରେ ଖାଲଟିଏ । ସେରେ ହେବ ମାଂସ ନାହିଁ ।

ଡ଼ାକୁ ନିର୍ବାକ । ଚମତ୍କୃତ । ଭୁଲା ଆଉ ସେ ନେଲା ନାହିଁ । ବୁଢ଼ୀକୁ ମନା କରିଦେଇ ତା ବାଟରେ ସେ ଚାଲିଗଲା ।

ଡାକୁଟିର ମନ ଭିତରେ ଅଶେଷ ପରିବର୍ତ୍ତନ । ଘରେ ପହଞ୍ଚି ସେ ଲୁଣ୍ଠିତ ସମ୍ପତ୍ତିକୁ ବ୍ରାହ୍ମଣ ଓ ଭିକାରୀଙ୍କୁ ଦାନ କରିଦେଲା । ସବୁଦିନ ପାଇଁ ତାର ଧନ୍ଦା ଛାଡ଼ିଦେଲା ।

ଏଥର ସେ ନିଜେ ଖଟେ । ନିଜର ପରିଶ୍ରମରେ ଚଳେ । କାହାକୁ ଠକେ ନାହିଁ । ମିଛ ବି କହେ ନାହିଁ । ଏବେ ସେ ମଣିଷ ଭିତରେ ମଣିଷଟିଏ ।



## ଚାଷୀ ଓ ମହାଜନ

ସବୁ ଚାଷୀ ଏକା । ତାଙ୍କ ପାଇଁ ଖରା, ବର୍ଷା, ଶୀତ ସବୁ ସମାନ । ସକାଳୁ ସେମାନେ ଉଠନ୍ତି । ଦ'ଟା ଯାହା ହେଲେ ଖାଇ

ଖଲକୁ ଯାଆନ୍ତି । ସେଇଠି ଦିନଯାକ ଖଟନ୍ତି । ହାଡ଼ଭଙ୍ଗା ସେ ପରିଶ୍ରମ । ଅଳସ ତାଙ୍କ ଜାତକରେ ନାହିଁ । ହେଲା କ'ଣ ଜାଣନ୍ତି ନାହିଁ । ଦି'ପହରେ ଘରୁ ଖାଇବାଯାଏ । ସେଇ ଖଲରେ ଦି'ଟା ଖାଇ ନଅନ୍ତି । ରାତିରେ ଯାହା ଘରକୁ ଫେରନ୍ତି । ଏଇଟା ହିଁ ସେମାନଙ୍କର ଜୀବନ ।

ଜୀବନଟାଯାକ ଖଟି ଖଟି ଭାଗ୍ୟ ବଦଳେ ନାହିଁ । ସବୁବେଳେ ସେମାନେ ଅଭାବୀ । ଦାନ ଧର୍ମ ତ ଦୂରର କଥା, ଗୁଜୁରାଣ ବି ମେଣ୍ଟେଇ ପାରନ୍ତି ନାହିଁ । ପିଲା ଛୁଆଙ୍କୁ ଭଲରେ ଦି'ଟା ଖାଇବାକୁ ଦେବାକୁ ସେମାନେ ଅକ୍ଷମ । ସେଇଟାହିଁ ସେମାନଙ୍କର ବଡ଼ ଅବଶୋଷ ।

ଫସଲ ପାଗ ଯୋଗ ଉପରେ ନିର୍ଭରଶୀଳ । କୃଷୀ କିଦା ଯୋଗ କରିବ । ପାଗ ତ ବଦଳାଇ ପାରିବ ନାହିଁ । ତାହା ଈଶ୍ୱରଙ୍କ ହାତର କଥା । ସେଥିପାଇଁ ସେ ନାଚାର । ବେଳେ ବେଳେ ପାଗ ବିଗିଡ଼େ । ଫସଲ ନଷ୍ଟ ହୁଏ । କେତେବେଳେ ଅଧା ଆଉ କେତେ ବେଳେ ବି ପୁରା । ସବୁ ପରିଶ୍ରମ ତାର ବୃଥା ।

ଶିବ ସିଂ ଜଣେ କୃଷୀ । ସେ ଆସି ବୁଢ଼ା ହେଲା । ଜୀବନଯାକ ଖୁବ୍ ଖଟିଲା । ତଥାପି, ତା ଦେହରେ ଦି'ପଲ ମାଂସ ନାହିଁ । ଶରୀରଟା ଯାକ ଖାଲି ହାଡ଼ମୟ । ପଞ୍ଜରା ହାଡ଼ ବି ଗଣି ହୋଇ-ଯାଉଛି ।

କୋଠିରେ ତାର ଧାନ ନାହିଁ । ଘରେ ବଢ଼ିଲା ଝିଅ । ଆଉ ଅପେକ୍ଷା କରି ହେବ ନାହିଁ । ଅଥଚ ବାହା ହେବାକୁ ଘରେ ସମ୍ବଳ ନାହିଁ । ଆଜି ନୁହେଁ—ବହୁତ ଆଗରୁ ସେ ଭାବୁଛି । ଆସ୍ତେ ଆସ୍ତେ ଅଳଙ୍କାର ଦି' ଖଣ୍ଡ କରି ରଖିବ । ଖାଲି ଏକଥା ମନଭିତରେ ରଖିନି । ସ୍ତ୍ରୀକୁ ବି କହିଛି ! କେତେ ରାତି ସ୍ତ୍ରୀ ସାଥିରେ

ଆଲୋଚନା ମଧ୍ୟ କରନ୍ତି । ଉଭୟେ ବହୁତ ଭାବନ୍ତି । ସେ ଭାବନାର ଶେଷ ନାହିଁ । କୂଳ କିନାରା ବି ନାହିଁ । ଭାବ ଭାବ ସ୍ତ୍ରୀ ବି ଚାଲିଗଲା । ଅଳଙ୍କାର ଖଣ୍ଡେ ବି ଝିଅପାଇଁ ହୋଇ ପାରିଲା ନାହିଁ ।

ସ୍ତ୍ରୀକୁ ସେ ଖୁବ୍ ଭଲପାଏ । ଭାବିଥିଲା—ସ୍ତ୍ରୀପାଇଁ ସମାଧିଟିଏ କରିବ । ସେ କଥାଟା ବି ମନରେ ସେମିତି ରହିଗଲା । ବେଳେ ବେଳେ ରାତିରେ ନିଦ ଭାଙ୍ଗିଯାଏ । ମନଟା ଗୋଳେଇ ଘାଣ୍ଟି ହୁଏ । ନିଦ ଆଉ ଲାଗେ ନାହିଁ ଏ କଥାଗୁଡ଼ିକ ସେ ଗୁଣି ହୁଏ । ବେଳ ଗଡ଼ିଚାଲେ । ଅନ୍ଧ ଦ୍ରୁତ ଗତିରେ । ରାତି ପାହିଯାଏ । ସେ ଜାଣିପାରେ ନାହିଁ ।

ଚାଷୀଭଳି ମହାଜନମାନେ ଗାଁରେ ରୁହନ୍ତି । ସେମାନେ ଖଟନ୍ତି ନାହିଁ । ଘରେ ବସନ୍ତି । ଖାଲି ଚାଷୀକୁ ଟଙ୍କା ଧାର ଦିଅନ୍ତି । ସୁଧ ବେଶ୍ ଚଢ଼ା । ଫସଲ ନେବେ ଶସ୍ତା ଦରରେ । ଚାଷୀର ଅଭାବ ବେଳେ ଉପାୟ ନ ଥାଏ । ତେଣୁ ତା ଫାଶରେ ପଡ଼େ ।

ସେଇ ଗାଁର ମହାଜନ ରାମାନନ୍ଦ । ଶୀବ ସିଂ ସାଥିର ସେ । ଦୋକାନରେ ବସେ । କୁଆଡ଼େ ଯାଏ ନାହିଁ । ତାର କିଛି ନଥିଲା । ଦୋକାନରୁ ତାର ଜୀବନ ଆରମ୍ଭ । ପିଲାଦିନେ ଥିଲା ଖଡ଼ିକା ପରି । ଫୁଙ୍କି ଦେଲେ ପଡ଼ିଯିବ । ଏବେ କିନ୍ତୁ ପୃଥୂଳକାୟ । ଚକ୍‌କଣ୍ ବୋହି ପଡ଼ୁଛି । ଥନ୍ତଲ ପେଟ ଓହଳି ଯାଇଛି । କାନ୍ଧ ବେକ ସମାନ । ପରିଶ୍ରମ ଧନ ହେଲେ କରେନାହିଁ । ଏଣେ ସମ୍ପତ୍ତି ବଢ଼ିଚାଲିଛି । ଏଇନେ ଅମାପ ଖର୍ଚ୍ଚ । ଘରେ ତା'ର ଗହଳି । ଦାନ ଧର୍ମ ବି ବେଳେ ବେଳେ କରେ ।

ରାମାନନ୍ଦ କପଟୀଟାଏ । ମୁହଁରେ ସବୁବେଳେ ହସ । କିନ୍ତୁ ଆନ୍ତରିକତାର ଅଭାବ । ସବୁଖାଲି ଲୋକ ଦେଖାଣିଆ । ଗୁହାଣୀରେ ଶଠତା । କଥା ନରମ । ମନକୁ ସୁହାଇଲା ଭଳି । ପାଣିରେ

ସର ପକେଇଦିଏ । ଗୋଟାପଣେ ନିଜର କରିନିଏ । କିନ୍ତୁ ସବୁ ଖାଲି କଥାରେ । ତା'ର ସବୁ ଭୁଣ୍ଡର ସଂସାର । ମଲା ଟିକେ ବି ଦେହରୁ ଦେବ ନାହିଁ । ଏକଥା ସମସ୍ତଙ୍କୁ ଜଣା । ପଛରେ ସମସ୍ତେ ସମାଲୋଚନା କରନ୍ତି । ଏସବୁ ସତ୍ତ୍ୱେ; ଋଷୀ ତା ପାଖକୁ ଯାଏ । ଶସ୍ତାରେ ତାକୁ ଫସଲ ଦିଏ । କାଡ଼ିଆ ଆଣେ ଚଢ଼ା ପୁଣି ଚକ୍ରବୃଦ୍ଧି ସୁଧରେ । ଥରେ ଯେ ତା'ର ଖାପଟରେ ପଡ଼ିଛି, ତା'ର ନିସ୍ତାର ନାହିଁ । ଥରେ ତା'ର ନାଲି ମଲାଟ ଖାତାରେ ଟିପ ଦେଲେ, ତମର ସବୁ ସରିଗଲା । ସେ କରଜ ଆଉ ଶୁଝିହେବ ନାହିଁ । ପୁରୁଷାନୁକ୍ରମେ ଧାରୁଆ ହୋଇ ରହିଯିବ ।

ରାମାନନ୍ଦ ନିଜେ କହେ—ତାର ନାଲି ମଲାଟ ଖାତାଟି ଚିତ୍ରଗୁପ୍ତ ପାଞ୍ଜି । ଥରେ ନାଁ ଚଢ଼ିଲେ ରକ୍ଷା ନାହିଁ । ଯମ ଛାଡ଼ିବ ନାହିଁ । କଡ଼ା କ୍ରାନ୍ତି ହିସାବ କରି ନେବ ।

ଗାଁଯାକ ତା'ର ଧାରୁଆ । ଶିବ ସିଂ ଏକମାତ୍ର ବ୍ୟତିକ୍ରମ । ଅଭାବରେ ସେ ପଡ଼ିଛି । ସ୍ତ୍ରୀ ପିଲାମାନେ ତା'ର ଉପାସ ରହିଛନ୍ତି । ରାମାନନ୍ଦ ପାଖକୁ କେତେଥର ଗୋଡ଼ କାଢ଼ିଛି । ବାଟରୁ ଫେରି-ଆସିଛି । ତା' ବାରଣ୍ଡା ଉପରକୁ ସେ କେବେ ଉଠିନାହିଁ ।

ସବୁ ଋଷୀଙ୍କ ସାଥିରେ ସେ ମିଶିଛି । ଶୁଣିଛି ତାଙ୍କର ଦୁଃଖର କାହାଣୀ । କରଜ ଆଣିବା ସୁଖ । ସେ ପଇସା କଷ୍ଟ ଅର୍ଜିତ ନୁହେଁ । ତେଣୁ ଖର୍ଚ୍ଚ କଲେ ବାଧେ ନାହିଁ । ଅଯଥାରେ ବୋହି-ଯାଏ । ଶୁଝିବା କଥା ପଡ଼ିଲେ କାଟେ । ଶୁଝି ତ ହୁଏନାହିଁ । ଶସ୍ତାରେ ଜିନିଷ ଦିକ ଆଉ ପରକୁ ହାତ ପତାଇ ସେ ଧାର ବି ଶୁଝିହୁଏ ନାହିଁ । ଧାର ବଢ଼ି ବଢ଼ି ଚାଲେ । ଅକୁଳାଣ ଆଉ ମେଣ୍ଟେ ନାହିଁ । ଅଭାବ ବଢ଼ିଚାଲେ । ସ୍ତ୍ରୀ ପିଲାଏ ଚିଡ଼ନ୍ତି । କଣ୍ଟ ମନ୍ତବ୍ୟ ତାଙ୍କର । ଅତ୍ୟନ୍ତ ଅସହ୍ୟ । ଋଣ ଆସିଛି, ତାଙ୍କର ପାଇଁ ସତ

ଖର୍ଚ୍ଚ ବ ତାଙ୍କର ପାଇଁ ହୋଇଛି । ସେମାନେ ସ୍ୱୀକାର କରିବାକୁ ନାରାଜ । ସବୁ ବିଚିତ୍ର । ସବୁ ଅଦ୍ଭୁତ । ଏସବୁ ଋଣୀମାନଙ୍କର ଦେହ ଲଗାଇବାର କଥା । ଶିବ ସବୁ ଦେଖିଛି । କରଜ କରିବାକୁ ତାର ଘୋର ଭୟ । ସେଥିପାଇଁ ତା' ସ୍ତ୍ରୀ ଓ ପିଲାଙ୍କ କଥା ମାନନ୍ତି ନାହିଁ ।

ସବୁବେଳେ ଶିବର ଗୋଟିଏ କଥା । ସେ କେମିତି ଧନୀ ହେବ । ପଇସା ଆସିଲେ, ତାର ସବୁ ସମସ୍ୟା ଆପେ ଆପେ ଉଭେଇଯିବ । ସେଇଥି ପାଇଁ ଯେଉଁଠି ବସେ—ମୁଣ୍ଡ ତଳକୁ କରିଦିଏ । ଚିନ୍ତାରେ ମଜ୍ଜି ଯାଏ ।

ସେ ଜାଣେ—ନୂଆ କଥା କରିବାକୁ ହେଲେ ପରଠୁ ବୁଝିବାକୁ ହେବ । ସେଇ ଅନୁସାରେ କାମକଲେ ଫଳ ମିଳେ । ବେଶୀ ହଇରାଣ ହେବାକୁ ପଡ଼େନାହିଁ । କିନ୍ତୁ ତାକୁ ଧନୀ ହେବାକୁ ହେବ । ସେଥିପାଇଁ ସେ ପରାମର୍ଶ ନେବ । ସମସ୍ତେ ତ ଋଣୀ । ନିର୍ଦ୍ଧନ । ସମଦୁଃଖୀ । ସେମାନେ ବା କ'ଣ ପରାମର୍ଶ ଦେବେ ? ଏଇକଥା ସବୁବେଳେ ଭାବେ । ଭାବନାର ତା'ର ଅନ୍ତ ନାହିଁ । ସ୍ଥିରକଲା—ଜଣେ ଧନୀ ଲୋକର ସନ୍ଧାନ ସେ ନେବ । ତା'ଠାରୁ ସବୁ ବୁଝିବ । କିନ୍ତୁ ରାମାନନ୍ଦ ବ୍ୟତୀତ ଅନ୍ୟ ଧନୀ ଲୋକକୁ ସେ ଜାଣେ ନାହିଁ । ଅନେକ ଥାଇ ପାରନ୍ତି । କିନ୍ତୁ ସେମାନେ ତାର ଅଜଣା ଓ ଦୂରରେ । ତେଣୁ ତାଙ୍କ ପାଖକୁ ଯିବାର ପ୍ରଶ୍ନ ଉଠୁନାହିଁ । ମନେ ମନେ ଶେଷକୁ ସ୍ଥିର କଲା । ଯାହା ହେଉନା କାହିଁକି ସେ ରାମ ନନ୍ଦ ପାଖକୁ ଯିବ । ସେ କିପରି ଧନୀହେଲା, ତାଠାରୁ ବୁଝିବ । ଏକଥା ଭାବେ ସିନା, କିନ୍ତୁ ରାମାନନ୍ଦ ପାଖକୁ ସେ ଯାଇପାରେ ନାହିଁ । କାରଣ—ରାମାନନ୍ଦ ଠକଟା । ଠକିଦେବ । ଠିକ୍ କଥା କହିବ ନାହିଁ ।

ଏମିତି କେତେଦିନ ବିତିଗଲା । ଦିନେ ଖବରଲା, ପଣ୍ଡିତମାନେ

କହନ୍ତ, ଶୁଭକାମ ଶୀଘ୍ର କରିବ । ତେଣୁ ଡେରିକରି ଲାଭ ନାହିଁ । ରାମାନନ୍ଦ ପାଖକୁ ସେ ଯିବ । ଦେଖିବ, ସେ କଣ କହୁଛି । ତା- କଥା ମାନିବା ନ ମାନିବା ନିଜ ହାତରେ କଥା । ଆଉ ହେଳାକରି ଲାଭ ନାହିଁ ।

ଦିନେ ସେ ସକାଳୁ ଉଠି ଘରୁ ବାହାରିଗଲା । ଯୋଗକୁ ସେଦିନ ରାମାନନ୍ଦ ଘରେ ଥାଏ ।

ପିଲା ଦିନର ସେ ସାଥୀ । ଦୁଇବନ୍ଧୁ ସେଠି ଟିକେ ବସିପଡ଼ିଲେ । ହିଡ଼ ଉପରେ । ଶିବ ଆରମ୍ଭ କଲା—"ଭାଇ, ଜୀବନଯାକ ବହୁତ ପରିଶ୍ରମ କଲି । ବୁଢ଼ା ଆସି ହେଲି । ହେଲେ—ହାତକୁ ଦି' ପଇସା ଆସିଲା ନାହିଁ । ଘରେ ବଢ଼ିଲା ଝିଅ । ଉଠାଇବାକୁ ହେବ । ଅଳଙ୍କାର ଗଢ଼ିବାକୁ ସମ୍ବଳ ନାହିଁ । ବାହାଘର କପରି କରିବି, ସେ ଏକ ଚିନ୍ତା । ସ୍ତ୍ରୀ ତ ଗଲା । ସମାଧିଟିଏ କରିବାକୁ ଇଚ୍ଛା । ତାବି ଏ ପର୍ଯ୍ୟନ୍ତ ହୋଇ ପାରିଲା ନାହିଁ । ଭାବିଲି—ତୋ ପାଖକୁ ଆସିବି । କେମିତି ଧନୀ ହେବି, ସେ ବିଷୟରେ ପରାମର୍ଶ ନେବି ।"

ରାମାନନ୍ଦ ଶିବ ମୁହଁକୁ ଦଣ୍ଡେ ଗୃହିଁଲା । ସବୁ ଗ୍ରୁଷୀ ସରଳ, ନିଷ୍କପଟ । ଶିବ ଆସି ବୁଢ଼ା ହେଲାଣି । ଟିକଏ ବି ବଦଳି ନାହିଁ । ଶିବ ପାଇଁ ସେ ଦରଦୀ । ଦୀର୍ଘନିଶ୍ୱାସ ପକାଇ କହିଲା—"ଭାଇ, ସବୁ ରାମର ଇଚ୍ଛା ।"

ଶିବ ରାମାନନ୍ଦ ମୁହଁକୁ ଘଡ଼ିଏ ଗୃହିଁଲା । କ'ଣ ବୁଝିଲା କେଜାଣି, 'ଆଚ୍ଛା' କହି ଉଠି ଠିଆହେଲା । ପଦୁଟିଏ କଥା ବି ଆଉ କହିଲା ନାହିଁ । ଗୃଲିଲା ଘରଆଡ଼କୁ ଏକମୁହାଁ ହୋଇ । ମନ ଲାଗିଛି—ରାମ ପାଖକୁ ଯିବ । ତାକୁ ଧନୀ କରିବାକୁ କହିବ ।

ଘରେ ପହଞ୍ଚି ଝିଅକୁ ରୁଟି କରିବାକୁ କହିଦେଲା । ନିଜେ ପ୍ରସ୍ତୁତ ହେଉଥାଏ । ରୁଟି ତିଆରି ସରିବା ମାତ୍ରେ ସେ ଘରୁ ବାହାରି

ପଡ଼ିଲା । କୂଆଡ଼େ ଯାଉଛି—ସେ କଥା କାହାରିକୁ ବି କହିଲା ନାହିଁ ।

କିଛି ବାଟ ଗଲାପରେ ସେ ଭାବିଲା ରାମଙ୍କ ପାଖକୁ ତାର ଯିବାର କଥା । କିନ୍ତୁ ବାଟ କଥା ତ ରାମାନନ୍ଦକୁ ପଚାରିପାରିଲା ନାହିଁ । ଭୁଲ ହୋଇଗଲା । ଘରକୁ ଫେରିଲେ ଅନୁକୂଳ ଭାଙ୍ଗି ଯିବ । ତେଣୁ ଚାରିଆଡ଼କୁ ଚାହିଁଲା । ଯଦି କିଏ ଆସୁଥିବ, ଠିକଣାଟା ବୁଝିନେବ ।

ଦେଖିଲା—ଗୌରପ୍ରସାଦ ଆସୁଛନ୍ତି । ସେ ଜଣେ ପଣ୍ଡିତ । ପରାମର୍ଶ ଦିଅନ୍ତି । ସେଥିପାଇଁ ତାଙ୍କ ପାଖରେ ଲୋକମାନଙ୍କ ଭିଡ଼ । ଭାବିଲା—ତାଙ୍କଠାରୁ ବୁଝିନେବ ।

ଗୌରପ୍ରସାଦଙ୍କୁ ସେ ଜୁହାର କଲା । ଗୌରପ୍ରସାଦ ହାତ ଟେକି ଆଶୀର୍ବାଦ କଲେ । ଶିବ ତାଙ୍କ ହାତକୁ କେତେଖଣ୍ଡ ରୁଟି ବଢ଼ାଇ ଦେଲା । ଗୌର ପ୍ରସାଦ ଆଶ୍ଚର୍ଯ୍ୟ । କୌଣସି ପ୍ରଶ୍ନ ପଚାରିବା ପୂର୍ବରୁ ଶିବ କହିଲା 'ମହାରାଜ ! ସାରା ଜୀବନ ଖଟିଲି । ଯେଉଁ ଗରିବକୁ ସେଇ ଗରିବ । ବୁଢ଼ାତ ହେଲି, ଆଉ ବା କେତେଦିନ ! ରାମାନନ୍ଦ ଉପରେ ଧର୍ମ ହେଲା, ସେ କଥା ବୁଝିବାକୁ ତା ପାଖକୁ ଯାଇଥିଲି । ରାମାନନ୍ଦ କହିଲା 'ସବୁ ରାମର ଇଚ୍ଛା ।' ରାମଙ୍କ ପାଖକୁ ଯିବାକୁ ମୋର ଭାରି ଆଗ୍ରହ । ହେଲେ, ବାଟ ଜାଣିନାହିଁ । ଆପଣ ଟିକେ ଦୟାକରି ବାଟ ବତେଇ ଦିଅନ୍ତୁ ।

ଗୌର ପ୍ରସାଦ ସବୁ ଶୁଣିଲେ । ସେ ନିଜେ ବି ଗରିବ । ଅଭାବୀ । ସେ ବା କଣ ବାଟ ଦେଖାଇବେ । ଅଜାଣରେ ଏକ ଦୀର୍ଘନିଶ୍ୱାସ ଆପେ ଆପେ ତାଙ୍କର ବାହାରି ଆସିଲା । ହାତ ଦୁଇଟିକୁ ସିଧା ଉପରକୁ ଉଠାଇ ସେ କହିଲେ—"ଶିବ ! ସବୁ

ରାମର ଇଚ୍ଛା । ସେ ସର୍ବବ୍ୟାପୀ । ଯେଉଁଠିକି ଯିବୁ, ସେଠି ତାଙ୍କୁ ପାଇବୁ ।"

ଉତ୍ତରଟି ଶିବ ମନକୁ ପାଇଲା ନାହିଁ । ତଥାପି ଜୁହାରଟିଏ ପକାଇ ଆଗକୁ ଚାଲିଲା । ରାମଙ୍କ ପାଖକୁ ଯିବାକୁ ଇଚ୍ଛା ତାର ପ୍ରବଳ । ସେଥିପାଇଁ ସେ ଜୋରରେ ଚାଲିଥାଏ । କୁଆଡ଼କୁ ନଜର ନଥାଏ ।

ଶିବ କିଛିବାଟ ଗଲା ପରେ ଦେଖିଲା—ଗୋଟିଏ ବଡ଼ବଟ ବରଗଛ ମୂଳରେ ଜଣେ ସାଧୁ ପଦ୍ମାସନରେ ବସିଛନ୍ତି । ଆଖିଦୁଇଟି ଅର୍ଦ୍ଧନିମୀଳିତ । ସମ୍ମୁଖରେ ଯଜ୍ଞକୁଣ୍ଡ । ଶିବ ଖୁବ୍ ଖୁସି । ଭାବିଲା ସବୁ ଏଇଠୁ ମିଳିଯିବ । ଚିନ୍ତାକର ଲୋଡ଼ ନାହିଁ । ସାଧୁଙ୍କ ପାଖକୁ ଯାଇ ସାଷ୍ଟାଙ୍ଗ ପ୍ରଣିପାତ କଲା । ତାପରେ ତାଙ୍କ ଆଗରେ ବସିପଡ଼ିଲା । ରୁଟି କେତେଖଣ୍ଡ ତାଙ୍କ ଆଗରେ ଥୋଇଦେଲା । ସେଇମିତି ସେ ସେଠି ବସି ରହିଥାଏ । ଘଣ୍ଟାଏ ଗଲା । ଦୁଇଘଣ୍ଟା ଗଲା । ବେଳ ଆଖର ହେଲା । ତଥାପି ସାଧୁ ଧ୍ୟାନରତ । ବସିବସି ଶିବ ବିରକ୍ତ । ଅଧୈର୍ଯ୍ୟ । ଭାବିଲା—ଅପେକ୍ଷା କରି ଲୋଡ଼ ନାହିଁ । ମୁଣ୍ଡିଆଟିଏ ମାରି ସେ ଆଗକୁ ଚାଲିଲା ।

ବାଟସାରା ଭାବୁଥାଏ—ରାମ ଗିରି ପ୍ରଧାନ ତ ମିଛୁଆ ନୁହନ୍ତି । ଠକିବେ ନାହିଁ । ତେଣୁ ରାମ ସବୁଠି ଅଛନ୍ତି । ତାହାହେଲେ ତାଙ୍କୁ ତ ଭେଟ ମିଳିଯିବାର କଥା । ଭେଟ ହେଉନାହିଁ କାହିଁକି ? ରାମଙ୍କୁ ପାଇବାରେ ଆଗ୍ରହ ତାର ଖୁବ୍ ବେଶୀ । ସେ ଏକ ନିଶ୍ୱସରେ ଚାଲିଥାଏ । କିଛି ବାଟ ଗଲାପରେ ଗଛଟିଏ ପଡ଼ିଲା । ମୂଳରେ ତାର ଲୋକଟିଏ ବସିଥାଏ । ଜଣା ପଡୁଥାଏ—ଲୋକଟି ଗରିବ । ଅଭାବୀ । ଶିବ ତା ନିକଟକୁ ଗଲା । ପାଖରେ ତାର ବସିପଡ଼ିଲା । ଅବଶିଷ୍ଟ ରୁଟି ତକ ତାକୁ ଦେଲା ।

ଲୋକଟି କିଛି ରୁଟି ଖାଇଲା । ଅଥଚ ମୁହଁରେ ତାର ଆନନ୍ଦର ଆଭାସ ନାହିଁ । ସେ ନିର୍ବିକାର । ନିରାସକ୍ତ । ଅତି ସାଧାରଣ ଭାବରେ ଶିବକୁ ପଚାରିଲା—"ଭାଇ । କୁଆଡ଼େ ଯାଉଛ ?" ଶିବ କହିଲା—"ରାମଙ୍କ ପାଖକୁ ।"

ତାପରେ ଟିକିଏ ରହି କହିଲା—"ଭାଇ । ତୁମେ ଯଦି ଜାଣିଛ, ମୋତେ ଟିକିଏ ବାଟ ବତାଇ ଦେବ କି ?" ହସି ହସି ଲୋକଟି କହିଲା 'ମୁଁ ତ ନିଜେ ରାମ ତୋର କ'ଣ ଦରକାର ଅଛି କହ ।"

ଶିବ ପ୍ରଥମେ ବିଶ୍ୱାସ କରି ପାରିଲା ନାହିଁ । ଗୌରି ପ୍ରସାଦଙ୍କ କଥା ମନେ ପଡ଼ିଲା । ଭାବିଲା—ହେଲେ ହୋଇଥିବ । ମୋ ଦୁଃଖ ତାକୁ କହିବି ।

ଶିବ ଆରମ୍ଭ କଲା—'ଜୀବନଟାଯାକ ଖଟିଲି । ଧନୀ ହୋଇ ପାରିଲି ନାହିଁ । ସବୁବେଳେ ଅଭାବ । ଘର ବାଧୁଛି । ଆମ ଗାଁର ରାମାନନ୍ଦ । କିଛି ନଥିଲା ତା'ର । ଏଇନେ ଧନୀ ମହାଜନ । କାହିଁରେ କଣ ଧନ । ସମ୍ପତ୍ତିରେ ବୁଡ଼ିଛି । ସେ ମୋ ପିଲାଦିନର ସାଙ୍ଗ । ଆଜି ସକାଳେ ଦେଖାହେଲା । ଧନୀ ହେବାର ଗୁପ୍ତତଥ୍ୟ ପଚାରିଲି । ସେ କହିଲା—'ସବୁ ରାମଙ୍କ ଇଚ୍ଛା' । ସାଥିସାଥି ବାହାରିଛି । ରାମଙ୍କୁ ଖୋଜିବି । ମୋତେ ଧନୀ କରିବାକୁ କହିବି । ବାଟରେ ଗୌରିପ୍ରସାଦଙ୍କ ସାଥିରେ ଦେଖାହେଲା । ସେ କହିଲେ, ରାମ ସବୁଠି ଅଛନ୍ତି । ମନ ପାଇଲି ନାହିଁ ପୁଣି ଖୋଜିବୁଲିଲି । ବାଟରେ ଜଣେ ସାଧୁ ବସିଥିଲେ । ଧ୍ୟାନମଗ୍ନ । ବହୁତ ସମୟ ଅପେକ୍ଷା କଲି ହେଲେ ସେ ଆଖି ଖୋଲିଲେ ନାହିଁ । ବାଧ୍ୟହୋଇ ସେଠୁ ଆସିଲି । ତା'ପରେ ଏଠି ଆସି ପହଞ୍ଚିଲି । ତୁମେ ଯଦି

ରାମ, ମତେ ସାହାଯ୍ୟ କର । ଧର୍ମ କରିଦିଅ ମୋ ଝିଅକୁ ବିବାହ କରେଇ ଦେବ । ସ୍ତ୍ରୀ ପାଇଁ ସମାଧିଟିଏ କରିବ ।"

ଶିବ ସବୁକଥା ତରତର ହୋଇ କହିଗଲା ଏକ ନିଃଶ୍ୱାସରେ । ଟିକିଏ ବି ଅଟକିଲା ନାହିଁ । ଲୋକଟି ଦେଖିଲା, ଶିବ ଖୁବ ସରଳ ମନ ତା'ର ନିର୍ମଳ । ଛନ୍ଦ କପଟ କିଛି ଜାଣେ ନାହିଁ ଲୋକଟିର ଦୟା ହେଲା । ସେ ଶିବକୁ ଶଙ୍ଖଟିଏ ଦେଇ କିମିତି ଫୁଙ୍କିବାକୁ ହେବ ବତାଇ ଦେଲା । ତା'ପରେ କହିଲା—'ଏ ଶଙ୍ଖକୁ ଏଇପରି ଫୁଙ୍କିବୁ । ଯାହା ମାଗିବୁ ସାଥିସାଥି ତାହା ମିଳିଯିବ । କିନ୍ତୁ ତମ ଗାଁ ମହାଜନ ପ୍ରତି ହୁସିଆର ଥିବୁ । ତାକୁ ଭଗବାନ, ମଣିଷ, ମ୍ୟାଜିକ୍ ହୁଣ୍ଡି, ନିନ୍ଦା ଓ ଧନ କିଛି ବଦଳାଇ ପାରିବେ ନାହିଁ । ଟିକିଏ ସୁବିଧା ପାଇଲେ, ସେ ତୋର ଶଙ୍ଖଟିକୁ ମାରିନେବ । ସେଥିପାଇଁ ସବୁବେଳେ ସାବଧାନ ଥିବୁ ।"

ଶିବ ସବୁ ଶୁଣିସାରି ସେଠୁ ଉଠିଲା । ପ୍ରଣାମ କରି ଘରକୁ ଫେରିଲା, ସେ ଖୁବ୍ ଖୁସି । ଗୋଡ ତା'ର ତଳେ ଲାଗୁ ନ ଥାଏ । ଲମ୍ବା ଲମ୍ବା ପାଦ ପକାଇ ଚାଲୁଥାଏ । ସତେ ଯେମିତି ସେ ଏକ ନବାବ ।

ଗାଁ ମୁଣ୍ଡରେ ମହାଜନ ଘର । ରାମାନନ୍ଦ ଦୋକାନରେ ବସିଥିଲା । ଶିବର ରଙ୍ଗଢଙ୍ଗ ଦେଖି ସେ ଠଉରାଇ ନେଲା—ଶିବ ନିଶ୍ଚୟ କିଛି ହାସଲ କରିଛି ।

ମହାଜନ ଦୋକାନରୁ ଓହ୍ଲେଇ ସିଧା ଶିବ ପାଖକୁ ଗଲା । ହାତଯୋଡ଼ି କହିଲା "ନମସ୍କାର ! ଯାହାହେଉ, ଭାଇ ଏତେଦିନେ ରାମ ପ୍ରସନ୍ନ ହୋଇ ତୋତେ ବର ଦେଲେ । ସେଥିପାଇଁ ମୁଁ ଭାରି ଖୁସି ।"

ଶିବ ଭାବିଲା—ସେ ତ କାହାକୁ କିଛି କହି ନାହିଁ । ଅଥଚ ଲୋକେ ତା'ର ଖବର ରଖୁଛନ୍ତି । ତା'ର ସଫଳତା ବିଷୟ ଜାଣି ଗଲେଣି । ଗାଁରେ ଗୁଡ଼ିଏ ତା'ର କୁଣ୍ଢେ ମୋଟ । ଆନନ୍ଦରେ ମଣିଷ ବାୟାର ହେଲେ ଆଗପଛ ଜାଣିପାରେ ନାହିଁ । ଶିବ ଅବସ୍ଥା ସେଇଆ ହେଲା ।

ଶିବ ଖୁସି ହୋଇ ସବୁକଥା ମହାଜନ ଆଗରେ ଡଗଡଗ କହିଗଲା । ଟିକିଏ ବି କିଛି ଲୁଚାଇଲା ନାହିଁ । କଥାରେ ତାର ବାଛୁନି ବାଜୁ ନ ଥିଲା ।

ସରଳ ହେଲେ ବି ଶିବ ବୋକା ନୁହେ । ମହାଜନକୁ ତାର ସନ୍ଦେହ ବହୁତ । ରାମ ମଧ୍ୟ ହୁସିଆର କରିଦେଇଛନ୍ତି । ସେଥିପାଇଁ ଶଙ୍ଖ ଫୁଙ୍କିବାର ବାଗ ତାକୁ ସେ ବତାଇଲା ନାହିଁ ।

ରାମାନନ୍ଦ କ ଛାଡ଼ିବାର ଜନ୍ତୁ ! ତା ପାରୁପର୍ଯ୍ୟନ୍ତ ଚେଷ୍ଟା କଲା । ହେଲେ, ଶିବ ତା ପାଲରେ ପଡ଼ିଲା ନାହିଁ ।

ଶଙ୍ଖଟି ଶିବର ଆନନ୍ଦର ଉତ୍ସ । ଏକଥା ମହାଜନକୁ ଅଛପା ରହିଲା ନାହିଁ । ମହାଜନର ଗୋଟିଏ ଚିନ୍ତା । ଯେ କୌଣସି ପ୍ରକାରେ ଶଙ୍ଖଟିକୁ ସେ ନେବ । ଫୁଙ୍କି କରି ସମ୍ପତ୍ତି ବଢ଼େଇବ ।

ଦୁଷ୍ଟ ପିଲାକୁ କେହି ଭଲ ପାଆନ୍ତି ନାହିଁ । ହତାଦର କରନ୍ତି । ପାଖରେ ପୁରାନ୍ତି ନାହିଁ । ରାମାନନ୍ଦ ଗୋଟିଏ ଦୁଷ୍ଟ ପିଲାକୁ ଡାକିଲା । ପାଖରେ ବସେଇ ଖାଇବାକୁ ଦେଲା । ଗପସପ ବି କଲା । ଦୁ' ପଇସା ଖର୍ଚ୍ଚକୁ ମଧ୍ୟ ଦେଲା ।

ହତାଦରିଆ ଯଦି ଟିକିଏ ସ୍ନେହ ପାଏ, ଗୋଟାସୁଦ୍ଧା ତା'ର ହେବାପାଇଁ ସେ ରାଜି । ତା କଥା ବି ମାନେ । ସେ ପିଲାର ଅବସ୍ଥା ସେଇଆ । ରାମାନନ୍ଦର ଏବେ ସେ ବଶଙ୍କର ।

ରାମାନନ୍ଦ ଏଥର ଭାରି ଖୁସି । ମଉକା ଦେଖି ତାକୁ ଶିବର ଶଙ୍ଖଟିକୁ ନେଇ ଆସିବାକୁ କହିଲା । ସେ ଫିଲା ବାନେ ଛପି ଛପି ଶିବ ଘରେ ପଶିଲା । କେହି ଯେତେବେଳେ ତା ଘରେ ନଥାନ୍ତି । ଚୋରକର ଶଙ୍ଖଟିକୁ ନେଇ ଆସିଲା ।

ଶଙ୍ଖଟି ଆଣି ସେ ରାମାନନ୍ଦକୁ ଦେଇଦେଲା । ଶଙ୍ଖଟି ପାଇ ରାମାନନ୍ଦ ଭାରି ଖୁସି । ଗୋଟେ ଘରେ ପଶି ଭିତରୁ କବାଟ ଦେଇଦେଲା । ତାପରେ ସେ ଶଙ୍ଖ ଫୁଙ୍କିବାରେ ବ୍ୟସ୍ତ । କେତେ କଥା ମନାସୁଥାଏ । ପୁଣି ଶଙ୍ଖ ଫୁଙ୍କେ । ଫୁଙ୍କି ଫୁଙ୍କି ନୟାନ୍ତ । ଓଠ ବଥିଲା, ଶଙ୍ଖ କିନ୍ତୁ ବାଜିଲା ନାହିଁ ।

ରାମାନନ୍ଦ କ ଗୁଣ୍ଡିବା ଲୋକ, ସେଥିରେ ତ ପୁଣି ଦୁଷ୍ଟବୁଦ୍ଧି । ଶିବକୁ ଡକାଇଲା । ରାମାନନ୍ଦ କଥାରେ ଶିବ ଶଙ୍ଖ ପାଇଛୁ । ସେଥିପାଇଁ ସେ ରାମାନନ୍ଦ ଉପରେ ସନ୍ତୁଷ୍ଟ । ଖବର ପାଇଲାମାତ୍ରେ ଶିବ ଚାଲିଆସିଲା । ଶିବକୁ ରାମାନନ୍ଦ ଶଙ୍ଖଟି ଦେଖାଇଲା ।

ଶିବ ଶଙ୍ଖ ଦେଖି ଆଶ୍ଚର୍ଯ୍ୟ । ରାମାନନ୍ଦ ଗୋଟାପଣ ତୁଳସୀ ପାଲଟିଗଲା । କହିଲା "ଶଙ୍ଖଟି ଜଣେ ଚୋରକର ନେଇଯାଉଥିଲା । ଏ ଶଙ୍ଖ ତୋର ବୋଲି ମୁଁ ଜାଣେ । ତାଠାରୁ ଜବରଦସ୍ତି ଛଡ଼େଇ ରଖିନେଲି । ବର୍ତ୍ତମାନ ଏ ଶଙ୍ଖଟି ମୋର । କିନ୍ତୁ ଏତେ କଷ୍ଟକରି ଶଙ୍ଖ ଆଣିଛୁ । ମୁଁ ପ୍ରକୃତରେ ଶଙ୍ଖଟିକୁ ରଖିବାକୁ ଚାହୁଁ-ନାହିଁ । ଶଙ୍ଖଟିକୁ ତତେ ଦେବି । ହେଲେ, ଗୋଟିଏ ସର୍ତ୍ତରେ । ଶଙ୍ଖ ବଜାଇ ତୁ ଯାହା ପାଇବୁ ମୁଁ ତାର ଦୁଇଗୁଣ ପାଇବି । ତୋ ହାତରୁ ତ ପଡ଼ୁନାହିଁ । ତୋର ଆପତ୍ତି କରିବାର କିଛି ନାହିଁ । ଯଦି ଏଥିରେ ରାଜି ହେବୁ ତା'ହେଲେ ଶଙ୍ଖ ଦେବି । ନଇଲେ ନାହିଁ ।"

ଶିବ ପ୍ରଥମେ ଏ ପ୍ରସ୍ତାବରେ ରାଜି ନ ଥିଲା । ଶଙ୍ଖ ଚୋରି-

ଯୋଗୁଁ ତା ମନରେ ଦୁଃଖ । କିନ୍ତୁ ରାମାନନ୍ଦକୁ ସେ ଅବିଶ୍ୱାସ କରିପାରିଲା ନାହିଁ । ମନେ ମନେ ଭାବିଲା ରାମାନନ୍ଦ ହୁଏତ ଶଙ୍ଖ ଦେଇ ନ ପାରେ । ଗାଁରେ ଆପତ୍ତି କରି ଲାଭ ନାହିଁ । ଗାଁଯାକ ତ ତାପାଖେ ଋଣୀ । ରାମାନନ୍ଦ ଯାହା କହିବ, ସେମାନେ ପାଳି ଧରିବେ । ତାଙ୍କ ପାଖରେ ନ୍ୟାୟ, ଅନ୍ୟାୟ ସବୁ ସମାନ । ଶିବର ଆଉ ଅନ୍ୟ ଉପାୟ ନ ଥିଲା, ବାଧହୋଇ ହଁ ଭରିଲା ।

ଶିବର ମନ ମରିଗଲା । ଏକଥା ରାମାନନ୍ଦ ଲକ୍ଷ୍ୟ କରିଛି । ଭାବିଲା—ଅଶାନ୍ତ କରି ଲାଭ ନାହିଁ । ଋଷୀମାନେ ଜିଦ୍‌ଖୋର । ପଶୁପରି ହିଂସୁକ । ରାଗରେ ହୁଏତ ଶଙ୍ଖଟି ଫିଙ୍ଗିଦେଇ ପାରେ । ତେଣୁ ଶିବକୁ ସେ ବୁଝାଇଲା, ଶିବର ଅଭାବ କମ୍ । ଅଳ୍ପ ଜିନଷ ପାଇଲେ ସେ ସନ୍ତୁଷ୍ଟ ହେବ । ରାମାନନ୍ଦର ଅଭାବ କଛି ନାହିଁ । ଅଳ୍ପ ପାଇଲେ ଲାଭ ତାର ନାହିଁ । ସେ ଖୁସିହୋଇ ପାରିବ ନାହିଁ । ତାର ଗୃହିଦା ବେଶୀ । ସେଥିପାଇଁ ଶିବ ଗୁଣେ ପାଇଲେ ସେ ଦ୍ୱିଗୁଣ ପାଇବା ନହାତି ଦରକାର ।

ଶିବ ତା କଥାରେ ମୁଣ୍ଡ ଟୁଙ୍ଗାରୁଥାଏ, କିନ୍ତୁ ମନେ ମନେ ଭାବୁଥାଏ—ରାମାନନ୍ଦ ଭାରି ଗୃଲାକ । ସେ ଶ୍ରମକଲା । ଶଙ୍ଖ ପାଇଲା । ଶଙ୍ଖ ବ ଫୁଙ୍କିବ । ମନାସିବ । ଅଥଚ ଶୁଖିଲାରେ ରାମାନନ୍ଦ ବାଳିଆ ପିଟିବ ।

ରାମାନନ୍ଦ କଥାରେ କିନ୍ତୁ ରାଜି ନ ହେବାକୁ ଉପାୟ ନାହିଁ । ଯେ କୌଣସି ପ୍ରକାରେ ଶଙ୍ଖଟିକୁ ତା ହାତ କରିବାକୁ ହେବ । ଶଙ୍ଖ ନେଲେ, ସେ ଆଉ ବଳାଇବ ନାହିଁ । ମନେ ମନେ ସେ ଏହା ସ୍ଥିରକଲା । ତା'ପରେ ରାମାନନ୍ଦ କଥାରେ ମୁଣ୍ଡ ଟୁଙ୍ଗାରିଲା ।

ରାମାନନ୍ଦଠାରୁ ଶିବ ଶଙ୍ଖଟି ନେଇ ଘରକୁ ଗଲା । ମହାଜନ ବ ଖୁସି । ସେ ଜାଣେ—ଋଷୀ ତାର ଜବାବ ରଖେ । ଏପଟ ସେପଟ କରେ ନାହିଁ ।

ବର୍ଷଟିଏ ବିତିଗଲା । ହଠାତ୍ ସେ ଶଙ୍ଖ ବଜାଇ ନାହିଁ । ତା ପରବର୍ଷ ମରୁଡ଼ି । ଜମିରେ ଫସଲ ସବୁ ଶୁଖିଗଲାଣି । ଆଉ ଉପାୟ ନାହିଁ, ଶିବ ଅସ୍ଥିର । ତାର ନଷ୍ଟଭିତ୍ତିକୁ ବଦଳାଇବାକୁ ହେବ । ନଇଲେ ରକ୍ଷାନାହିଁ । ବହୁ ଚିନ୍ତା ପରେ କୂଅଟିଏ ପାଇଁ ମନାସିବାକୁ ସେ ସ୍ଥିରକଲା । ଲୋକଟି ଯେମିତି କହିଥିଲା, ସେଇମିତି ଶଙ୍ଖ ଫୁଙ୍କିଲା ।

ଆଶ୍ଚର୍ଯ୍ୟ କଥା । ତା ଜମିରେ ସୁନ୍ଦର କୂଅଟିଏ ହୋଇଗଲା । ଆଗକୁ ଟିକିଏ ଅନାଇଲା । ଦେଖିଲା—ମହାଜନ ଜମିରେ ଦୁଇଟି କୂଅ । ମହାଜନ କୂଅ ପାଖରେ ଠିଆହୋଇଛି । ଖୁସିରେ ଗଦ୍‌ଗଦ୍ ଗୃଷୀଟି ସ୍ତମ୍ଭୀଭୂତ । ସେ ହର୍ଷିତ, ରାଗରେ ନଆଁ । ମନରେ ତାର ପ୍ରତିହିଂସା । ମହାଜନକୁ ପାନେ ଦେବାକୁ ସେ ବୁଦ୍ଧିପରି-କର ।

ପୁଣି ଥରେ ସେ ଶଙ୍ଖ ବଜାଇଲା । ଏଥର ମନାସିଲା— "ଭଗବାନ ମୋର ଗୋଟିଏ ଆଖି ଫୁଟାଇଦିଅ ।" ସତକୁ ସତ ତାର ଗୋଟିଏ ଆଖି ଫୁଟିଗଲା । ଏଣେ, ଆଖିପିଛୁଳାକେ ମହାଜନର ଦୁଇଟି ଆଖି ନଷ୍ଟ ହୋଇଗଲା ।

ମହାଜନ ବର୍ତ୍ତମାନ ଅନ୍ଧ । ଏ ବିପର୍ଯ୍ୟୟ ପାଇଁ ସେ ପ୍ରସ୍ତୁତ ନଥିଲା । ସେ ହତାଶ । ଦୁଃଖରେ ଅଧୀର । କୂଅ ପାଖରୁ ଘରକୁ ଧାଇଁଲା—ଖୁବ୍ ଜୋର୍‌ରେ । ସେ ତ ରାସ୍ତା ଦେଖିପାରୁ ନଥାଏ । ବାଟରେ ଆଉ କୂଅଟା । ତାକୁ ସେ ଆଗରୁ ଜାଣିନାହିଁ । ଏକା ନିଦସରେ ଆସୁଥିଲା । ଆଉ କୂଅରେ ସେ ଗଳିପଡ଼ିଲା । ସାଙ୍ଗେ ସାଙ୍ଗେ ପ୍ରାଣ ତାର ଛାଡ଼ିଗଲା ।

ମଣିଷ ଇତିହାସରେ ଗୃଷୀ ସବୁବେଳେ ହାରିଛି । କିନ୍ତୁ ଥରକ ପାଇଁ ଗୃଷୀ ବୁଦ୍ଧିଆ ବୋଲି ଜଣାଗଲା ।

ଅବଶ୍ୟ ଏଇ ବୁଦ୍ଧି ପରୀକ୍ଷାରେ ଗୃଷୀ ତାର ଆଖିଟିଏ ହରାଇଲା ।



## ଅଣ୍ଟୁକୁଡ଼ୀ

କେଉଁଦିନ ତଳର କଥା, ଗୃଷୀଟିଏ ଥିଲା । କୁଟୁମ୍ବ କହିଲେ ସେ ଆଉ ତାର ସ୍ତ୍ରୀ । ପିଲାଛୁଆ ନାହାନ୍ତି । ଜଞ୍ଜାଳ ବି ବେଶି କିଛି ନାହିଁ । ସକାଳୁ ସେ ଉଠେ । ବିଲକୁ ଯାଏ । ସେଠି ଖଟେ । ଦି'ପ୍ରହରେ ଘରକୁ ଫେରେ । ସେତେବେଳକୁ ପେଟ ତା'ର ଜଳୁଥାଏ । ଗାଧୋଇପଡ଼ି ଦି'ଟା ଖାଏ । ବିଶ୍ରାମ କରେ । ପୁଣି ଉପରବେଳା ବିଲକୁ ଯାଏ । ସନ୍ଧ୍ୟାହେଲେ ଘରକୁ ଫେରେ । ସ୍ତ୍ରୀ ସାଥିରେ ସୁଖ ଦୁଃଖ ହୁଏ । ରାତିରେ ଖାଇପିଇ ଶୁଏ । ପୁଣି ସକାଳୁ ଉଠି ବିଲକୁ ଯାଏ । ଏହା ଥିଲା ତାର ଜୀବନ ! ଦିନ କଟିଯାଏ ସୁଖ କ'ଣ, ଦୁଃଖ କ'ଣ କିଛି ସେ ଜାଣିନାହିଁ ।

ସ୍ତ୍ରୀ ତାର ଘରେ ରହେ । ରନ୍ଧାବଢ଼ା ଛଡ଼ା ଆଉ ତ କିଛି କାମ ନ ଥାଏ । ତେଣୁ ସେ ଭଲ ଭଲ ଜିନିଷ ରାନ୍ଧେ । ତାର ସେସବୁ ଖାଇବାରେ ଖୁବ୍ ଲାଳସା । କିନ୍ତୁ ସ୍ୱାମୀ ବୁଝାଇ କହେ—"ସବୁଦିନ ଭଲ ଖାଇଲେ, ପଇସା ନଅଣ୍ଟ ପଡ଼ିବ । କାହାକୁ ହାତ ପତାଇବା ?"

ସ୍ତ୍ରୀ ଭାବେ—ଆମର ତ ପିଲାଝିଲା ନାହାନ୍ତି । ଖାଇବା ନାହିଁ କାହିଁକି ? କାହାପାଇଁ ପଇସା ରଖିବା ? ସେ ମହନଭୋଗ ଓ ଚୁରୁମା କରେ । ନିଜେ ଖାଏ, କେବେ ସେ ତାର ସ୍ୱାମୀକୁ ଦିଏ ନାହିଁ କି ସ୍ୱାମୀକୁ ଜଣାଏ ନାହିଁ । ଯେଉଁଦିନ ବେଶୀ ଖାଇଦିଏ, ସେଦିନ ଶୋଇ ରହେ ।

ସ୍ୱାମୀ ଦି'ପ୍ରହରେ ପହଞ୍ଚିଲାବେଳକୁ ଦେଖେ, ସ୍ତ୍ରୀ ତାର ଶୋଇଛି । ରନ୍ଧାବଢ଼ା କିଛି ହୋଇନାହିଁ । ତା ପାଖକୁ ଯାଏ । ସ୍ତ୍ରୀ ଛଟାପଟ ହୋଇଗଲେ । ଚିତ୍କାର କରେ । କହେ—ପେଟକୁ ମାରୁଛି । ସେ ଖାଲି ଗଡ଼େ । ଭାରି କଷ୍ଟ । ଉଠିପାରେ ନାହିଁ । ସ୍ତ୍ରୀର କଷ୍ଟ ଦେଖି ସେ ବ୍ୟସ୍ତବ୍ୟସ୍ତ । ତୁରନ୍ତ କବିରାଜ ଡାକିବାକୁ ପଡ଼ିବ । ଏପଟେ ପେଟରେ ଭୋକ । ନ ରାନ୍ଧିଲେ ଖାଇପାରିବ ନାହିଁ । ସ୍ତ୍ରୀ ବି ଉପାସ ରହିଯିବ ! ସେଠୁ ଯାଏ କବିରାଜ ଡାକେ । ଔଷଧ ଆଣି ସ୍ତ୍ରୀକୁ ଦିଏ । ସ୍ତ୍ରୀ କହେ ଟିକିଏ ଭଲ ଲାଗୁଛି । ସେତେବେଳକୁ ବେଳ ଆଖର । ପେଟ ତ ଏଣେ ଜଳୁଛି । ତେଣୁ ବାଧ୍ୟହୋଇ ଚୁଲି ଲଗାଏ । ରାନ୍ଧିବାରେ ଅନଭ୍ୟସ୍ତ ସେ । ତେଣୁ ଚୁଲି ଫୁଙ୍କି ଫୁଙ୍କି ହାଲିଆ ହୁଏ । ଆଖିରୁ ଲୁହ ବୋହେ । ବହୁତ କଷ୍ଟରେ ସେ ରାନ୍ଧେ । ତଥାପି ସ୍ତ୍ରୀ ଖାଏନାହିଁ । କହେ—ତାକୁ ଭାରି କଷ୍ଟ । କିଛି ରୁଚୁ ନାହିଁ । ଯେତେ ବୁଝାଇଲେ ବି ବୁଝେନାହିଁ । ଏଣେ ବୁଢ଼ାଟି ଖାଉ ଖାଉ ସନ୍ଧ୍ୟା ହୋଇଯାଏ ।

ଯେଉଁଦିନ ରୋଗ ହୁଏ, ସେଇଦିନ ଛାଡ଼ିଯାଏ । ବୁଢ଼ାଟି ନିଶ୍ୱାସ ମାରେ । କିନ୍ତୁ ସେତିକିରେ ସରେନାହିଁ । ସ୍ତ୍ରୀର ରୋଗ ଲାଗିଥାଏ । ଏକା ପ୍ରକାରର ରୋଗ ନୁହେ । ଭିନ୍ନ ଭିନ୍ନ । କେଉଁଦିନ ପେଟକୁ ମାରେ ତ, କେଉଁଦିନ ମୁଣ୍ଡବିନ୍ଧା । ଆଉ କେଉଁଦିନ ଗୋଡ଼ବିନ୍ଧେ । ଦୁଇଚାରି ଦିନରେ ଥରେ ସେ ରୋଗରେ ପଡ଼େ । ଖୁବ୍ ପାଟିକରେ । ବୁଢ଼ାଟି ବ୍ୟସ୍ତବ୍ୟସ୍ତ ହୋଇଯାଏ । ଏଠୁସେଠୁ ଔଷଧ ଆଣେ । ସେଥିରେ ସେ ଭଲହୋଇଯାଏ ବୋଲି କହେ । କିନ୍ତୁ ବୁଢ଼ାଟିର ଖାଇବା ପିଇବାର ଠିକଣା ରହେନାହିଁ ।

ଏଣିକି ଆଉ ଦି'ଚାରିଦିନ ଛଡ଼ା ରୋଗ ହେଉନାହିଁ । ପ୍ରତିଦିନ ରୋଗ । ଔଷଧ ବି ଆଉ କାଟୁ କରୁନାହିଁ । ଗୁଣିଆ ଦରକାର

ପଡ଼ିଲାଣି । କେତେ ଗୁଣିଆ ଗଲେଣି । କିନ୍ତୁ ରୋଗ ଭଲ ହୁଏ ନାହିଁ । ଘରେ ସବୁବେଳେ ଚିତ୍କାର । ବେଦନାଗ୍ରସ୍ତ ମଣିଷର କଷ୍ଟରଧ୍ୱନି ଚିରକ୍ଳାନ୍ତକର ।

ଗୃହିଣୀଟି ଦଉଡ଼ ଦଉଡ଼ ହାଲିଆ । ହାତରେ ଥିବା ସମ୍ବଳ ବି ସରିଆସିଲାଣି । ଏଣେ ଗୃହରେ ଦୃଷ୍ଟି । ଗୃହିଣୀଟି ଭାବେ—ଆଗେ ତା ସ୍ତ୍ରୀର ରୋଗ ନଥିଲା । ସେତେବେଳକୁ ସେ ଶୁଖିଲା ଦେଖା ଯାଉଥାଏ । ଏବେ ରୋଗ ଧରିଛି । କିନ୍ତୁ ଗୋଟିଏ ପ୍ରକାରର ନୁହେଁ । ସବୁଦିନ ନୂଆରୋଗ । ସମସ୍ତେ ହସିଲେଣି । ଏପଟେ ସ୍ତ୍ରୀର ଚେହେରା ମଉଳୁ ନାହିଁ । ଦିନକୁ ଦିନ ଟିକେ ମୋଟା ହେବାରେ ଲାଗିଛି । ସୁସ୍ଥ ମଣିଷ ଭଳି । ବରଂ ଚିକ୍କଣ ବୋହିପଡ଼ୁଛି । ଚେହେରା ବି ସୁନ୍ଦର ହୋଇଗଲାଣି ।

ସେ ଜାଣିବାରେ ତ ସ୍ତ୍ରୀ ଖାଉନାହିଁ । କିନ୍ତୁ ଚେହେରା ତାର ଅପରିବର୍ତ୍ତିତ । ସେ ଆଶ୍ଚର୍ଯ୍ୟ ହୁଏ । ଥଳକୂଳ ପାଏନାହିଁ । ଖାଲି ସନ୍ଦେହରେ ବୁଡ଼ିଯାଏ । କିନ୍ତୁ ସେ ଉପାୟହୀନ । ସ୍ତ୍ରୀକୁ ଏସବୁ କିଛି କହିପାରେ ନାହିଁ । ମନ କଥା ମନରେ ମରେ ।

ମଣିଷ ମନରେ ଥରେ ସନ୍ଦେହ ପଶିଲେ, ବଡ଼େ । କମେ ନାହିଁ । ସନ୍ଦେହ ଦୂର କରିବା କଷ୍ଟର କଥା । ସନ୍ଦେହରୁ ଆସେ ଅବିଶ୍ୱାସ । ଅବିଶ୍ୱାସରୁ ଆସେ ଘୃଣା । ବେଳେ ବେଳେ ପ୍ରତିହିଂସା ନେବାର ଆକାଂକ୍ଷା ଆସେ । ଗୃହିଣୀର ବର୍ତ୍ତମାନ ସେଇ ଅବସ୍ଥା । ଯେଉଁଠି ବସେ, ସେଇକଥା ଭାବେ । ସ୍ତ୍ରୀକୁ ତାର ଶ୍ରଦ୍ଧା କରିବା କମିଗଲାଣି । ତଥାପି ନାଗର । ପ୍ରକୃତରେ ତା ଅନୁପସ୍ଥିତିରେ ସ୍ତ୍ରୀ ତାର କ'ଣ କରୁଛି, ସେ କଥା ଦେଖିବାକୁ ତାର ଇଚ୍ଛା ହେଲା ।

ଦିନେ ସେ ବିଲକୁ ବାହାରି ପଡ଼ିଲା, ତରତର ହୋଇ । କହିଗଲା—ଆସୁ ଆସୁ ଡେରିହେବ । ବିଲରୁ ସିଧା କବିରାଜ

ପାଖକୁ ଯିବ । ସେଠୁ ଔଷଧ ଧରି ଫେରିବ । କିନ୍ତୁ ସେ ବଲକୁ ଗଲନାହିଁ । ଟାଁ ମଣ୍ଡପ ଘରେ ଲୁଚିକରି ବସିଲ । କିଛିସମୟ ଗଲାପରେ ସେଠୁ ସେ ଛପିଛପି ବାହାରି ବାରିପଟେ ଘରେ ପଶିଲ । ଯାହା ଦେଖିଲା, ସେ ତାଜୁବ । ସ୍ତ୍ରୀ ତାର ବସି ମହନ-ଭୋଗ ଓ ଚୁରୁମା ଆନନ୍ଦରେ ଖାଉଛି । ଟିକିଏ ବି କୁନ୍ଥଉନାହିଁ । ଶୁଷୀଟି ନିର୍ବେଦ । ମନ ତାର ମଉଳିଗଲା । ସ୍ତ୍ରୀ ଯେ ଖାଲି ତାକୁ ଠକୁଛି ତା'ନୁହେଁ, ହଇରାଣ ବି କରୁଛି । ଏଥିରେ ତାର ସନ୍ଦେହ ରହିଲା ନାହିଁ । ଧୀରେ ଧୀରେ ଘରୁ ବାହାରି ଆସିଲା । ସ୍ତ୍ରୀ ତାକୁ ଦେଖିପାରି ନାହିଁ ।

ସେଠୁ ଆସି ମଣ୍ଡପରେ ଶୋଇଲା । ବେଳ ଗଡ଼ିବାରୁ ଘରକୁ ଗଲା । କବିରାଜ ଦେଖାହେଲେ କାହିଁ ବୋଲି ମିଛରେ କହିଲା । ସେ ତ ଏବେ ରନ୍ଧାବଢ଼ା କରିବାରେ ଅଭ୍ୟସ୍ତ । ନିଜେ ଦି'ଟା ରାନ୍ଧି ଖାଇଲା । ସ୍ତ୍ରୀକୁ ସେଦିନ ଡାକିଲା ନାହିଁ । ଖାଇକରି ଶୋଇଲା । କିନ୍ତୁ ଆଖିକୁ ନିଦ ନାହିଁ । ସ୍ତ୍ରୀ ତାକୁ ଠକୁଛି ବୋଲି ସେ ବିଶ୍ୱାସ କରିପାରୁ ନଥାଏ । ହେଲେ, ଆଖି ତ ନିଜର । ତାକୁ ତ ଅବିଶ୍ୱାସ କରିହେବ ନାହିଁ ।

ଉପାୟ ଭାବେ, ପାଏନାହିଁ । ସବୁକଥା ତାର ଜଳଜଳ ହୋଇ ଦେଖାଯାଏ । ସେ ବଲକୁ ଗଲାପରେ ସ୍ତ୍ରୀ ତାର ମହନ-ଭୋଗ ଚୂରୁମା କରେ । ପେଟେ ଖାଏ । ତାପରେ ଶୋଇଯାଏ । ତାପାଇଁ କାଲେ କାମ କରିବାକୁ ପଡ଼ିବ, ସେଥିପାଇଁ ରୋଗର ବାହାନା । ଏ ଏକ ରୋଗ । ଏହାକୁ ଭଲ ନକଲେ, ତାର ରକ୍ଷା ନାହିଁ ।

ଭାବେ—ସ୍ତ୍ରୀକୁ କହିଲେ ଘରେ ଝଗଡ଼ା ହେବ । ଆଉ ଶାନ୍ତି ରହିବ ନାହିଁ । ଦୁଇଟା ବୋଲି ମଣିଷ । ସବୁବେଳେ କଳି

ହେବ । ଘର ଆଉ ଘରହୋଇ ରହିବ ନାହିଁ । ଜୀବନ ବିଷମୟ ହୋଇ ଉଠିବ । ଘରକୁ ବି ଆଉ ଆସିବାକୁ ଇଚ୍ଛା ହେବନାହିଁ । ସବୁବେଳେ ଭାବେ—ସ୍ତ୍ରୀକୁ ସେ ପାନେ ଦେବ । ଯେମିତି ସେ ଆଉ ରୋଗର ନାଁ ବି ଧରିବ ନାହିଁ ।

ଖବର ନେଉଥାଏ—କେଉଁଠୁ ତାକୁ ବୁଦ୍ଧି ମିଳିବ । ଶୁଣିଲା—ତାଙ୍କ ଗାଁ ପାଖରେ ଗୋଟିଏ ଗାଁରେ ସାଧୁ ଜଣେ ଅଛନ୍ତି । ସେ ଖୁବ୍ ଭଲ ମଣିଷ । ସବୁ ଲୋକଙ୍କ କଥା ମନଦେଇ ଶୁଣନ୍ତି । ସବୁ ରୋଗ, ସବୁ ଦୁଃଖ, ସବୁ ଅସୁବିଧାରୁ ରକ୍ଷାପାଇଁ ବାଟ ବତାଇ ଦିଅନ୍ତି ।

ପରଦିନ ସେ ସାଧୁଙ୍କ ପାଖକୁ ଗଲା । ସ୍ତ୍ରୀ ପାଇଁ ତ ସେ ବ୍ୟସ୍ତ । ଜୀବନ ତାର ଦୁର୍ବିସହ । ଶାନ୍ତି ମିଳିବାର ସମସ୍ତ ଆଶାନେଇ ସେ ଯାଇଥାଏ । ସାଧୁଙ୍କୁ ଦେଖିବାମାତ୍ରେ ଲମ୍ବ ହୋଇ ଗୋଡ଼ତଳେ ପଡ଼ିଗଲା । ତାପରେ ଉଠି ସବୁକଥା ଏକା ନିଶ୍ୱାସକେ କହିଗଲା ।

ସାଧୁ ସବୁକଥା ଶୁଣିଲେ । ଚାରୋଟି ସୂତା ମୋଡ଼ା ଆଣିବାକୁ ବରାଦ କଲେ । ଚାଷୀଟି ବଜାରକୁ ଦୌଡ଼ିଲା । ସୂତା ମୋଡ଼ା ଆଣି ସାଧୁଙ୍କ ପାଦତଳେ ଥୋଇଦେଲା । ସାଧୁ ତାକୁ ମନ୍ତୁରାଇ ଚାଷୀକୁ ଦେଲେ । ତା' ଶୋଇବାଘର ଚାରିକୋଣରେ ଗୋଟିଏ ଗୋଟିଏ ରଖି ଦେବାକୁ କହିଲେ ।

ଚାଷୀଟି ଘରକୁ ଫେରି ସାଧୁଙ୍କ କଥାନୁସାରେ ଚାରି କଣରେ ଚାରୋଟି ମୋଡ଼ା ରଖିଦେଇ ବାଲିକୁ ଚାଲିଗଲା ।

ସେ ଯିବା ପଛେ ପଛେ ସ୍ତ୍ରୀ ଉଠି ରୋଷେଇ ଘରକୁ ଗଲା । ମନଭୋଗ କରିବାରେ ସେ ବ୍ୟସ୍ତ ।

ଶୋଇବାଘରୁ ଏତିକିବେଳେ ଗୋଟିଏ ସୂତାମୋଡ଼ା ପଚାରିଲା-"ସେ ଆସିଲାଣି ।"

ଅନ୍ୟଟି କହିଲା—"ଆସୁ"

ତୃତୀୟଟି କହିଲା—"ସେ କ'ଣ ଡରୁନାହିଁ ?"

ଚତୁର୍ଥଟି କହିଲା—"ଡରୁଥିଲେ, ଛଟା ଗାଲନ୍ତା କାହିଁକି ?"

ସ୍ତ୍ରୀ ସବୁ ଶୁଣିଲା । ଘରକୁ ଆସି ଉଣ୍ଡିଲା । କାହାକୁ ଦେଖିଲା ନାହିଁ । ପୁଣି ଫେରିଲା ସେପେଇ ଘରକୁ । ସେଠି ପହଞ୍ଚିଛି କ ନାହିଁ ଶୋଇବାଘରୁ ପୁଣି ସେଇକଥା । ଜଣକ ପରେ ଜଣେ କଥା କହୁଛନ୍ତି । ପୁଣି ଫେରିଲା ଘରଯାକ ତନ୍ନ ତନ୍ନ କରି ଦେଖିଲା । କାହାକୁ ପାଇଲାନାହିଁ । ଦୀର୍ଘଶ୍ୱାସ ପକାଇ ପୁଣି ସେପେଇ ଘରକୁ ଗଲା । ସେଠି ପହଞ୍ଚିବା ପରେ ପୁଣି ସେଇକଥା । ପୁଣି ଫେରିଲା । ଚାରି ପାଞ୍ଚଥର ଯିବା ଆସିବା ପରେ ସେ କାହାକୁ ପାଇଲା ନାହିଁ । ଶୋଇବାଘରେ ତାର କଥାବାର୍ତ୍ତା ହେଉଛନ୍ତି, ଚାରିଜଣ ଲୋକ । ସେ ବେଶ୍ ସବୁ ଶୁଣିପାରୁଛି । ଅଥଚ କାହାକୁ ଦେଖି ପାରୁନାହିଁ ।

ସେ ଭୟରେ ଥରିଲା । ଶେତା ପଡ଼ିଗଲାଣି । ବିଛଣାରେ ସେ ପଡ଼ିଗଲା । ଚିତ୍କାରଟିଏ କରି ଚେତା ତାର ବୁଡ଼ିଗଲା ।

ସ୍ୱାମୀ ତାର ଏହାଭିତରେ ପହଞ୍ଚି ଯାଇଥିଲା । ସେ ସ୍ତ୍ରୀକୁ ଚେତାକରି କହିଲା—"କବିରାଜ କ ଗୁଣିଆ କାହାକୁ ପାଇଲି ନାହିଁ । କାଲି ସକାଳେ ଡାକି ଆଣିବି । ଆଜ ଦିନଟା ଟିକିଏ ସହିଯା ।"

ସ୍ତ୍ରୀଟିର ମୁହଁ ଭୟରେ ଶେତା ପଡ଼ିଯାଇଥାଏ । ଆଖିରେ ତାର ବ୍ୟସ୍ତ ଚାହାଣୀ । ସେ ଘର ଚାରିଜଣଙ୍କ ଅନାଇଲା । ଥରି ଥରି ଭୟରେ କହିଲା—"ଏ ଘରେ ପ୍ରେତ ଅଛନ୍ତି । ଗୋଟିଏ ନୁହେଁ, ଦୁଇଟି ନୁହେଁ ଚାରି ଚାରିଟା ।"

ସ୍ୱାମୀ ତାର ତ ସବୁଜାଣି ନ ଜାଣିଲାପରି କହିଲା—"ଆମେ ଏ ଘରେ ଏତେଦିନ ହେଲା ରହୁଛୁ । କେବେ ଆମେ ପ୍ରେତ ଦେଖି

ନ ଥିଲୁ । ହଠାତ୍ ପ୍ରେତ ବାହାରିଲା, ମିଛକଥା ।"

ସ୍ୱାମୀର କଥାରେ ସ୍ତ୍ରୀଟି ରାଗିଗଲା । କହିଲା, "ହେ ଆଣ୍ଠୁକୁଡ଼ା ତୁ ଆଣି ଏଠିପ୍ରେତ ରଖିଛୁ । ତତେ ଭଗବାନଙ୍କ ରାଣ, ତାକୁ ନେଇଯାଅ । ମୁଁ ଆଉ ତୋତେ ହଇରାଣ କରିବ ନାହିଁ । ମୋର ଆଉ ରୋଗ ନାହିଁ, ମୁଁ ଭଲ ହୋଇଗଲଣି । ଏଥର ତୋ କଥା ମାନିବ । ମହନଭୋଗ ଆଉ ଚୁରୁମା ଲୁଚାଇକରି ଖାଇବି ନାହିଁ । ଆଗପରି ଠିକ୍ ସମୟରେ ରନ୍ଧାବଢ଼ା କରିବ । ଶୀଘ୍ର ତୁ ଏ ପ୍ରେତଗୁଡ଼ାଙ୍କୁ ନେଇଯାଅ । ନଇଲେ ମୁଁ ମରିଯିବ ।"

ଚାଷୀଟି ଘର ଚାରିକଣରୁ ସୁତା ମୋଡ଼ାଗୁଡ଼ିକୁ ଉଠାଇ ନେଇ-ଗଲା । ସାଧୁଙ୍କ ପାଖରେ ତାକୁ ସବୁ ଥୋଇ ମୁଣ୍ଡିଆ ମାରିଲା ।

ସାଧୁ ହାତଟେକି ଆଶୀର୍ବାଦ ଦେଲେ । ମୁହଁରେ ତାଙ୍କର ଟିକଏ ହସ ।

ଚାଷୀ ମୁହଁରେ ପରିତୃପ୍ତିର ଆଭାସ ।



## ଚୁରିବୋକା

ସେତେବେଳକୁ ରାତି ଅଧ । ତନ୍ତୀଟି ତା ସ୍ତ୍ରୀକୁ ଉଠାଇ କହିଲା—"ମୋ ପାଇଁ ଟିକଏ ତମାଖୁ କରିଦେ । ମୁଁ ହୁକା ଟାଣିବ ।"

ସ୍ତ୍ରୀଟି ବିରକ୍ତ ହୋଇ କହିଲା "ମଲା ! ତମର ଏ ରାତି ଅଧରେ ହୁକା ଟାଣିବାକୁ ଥିଲା । ମୁଁ ଦିନସାକ ଖଟି ଖଟି ହାଲିଆ । ମୁଁ ଆଉ ଏଇନେ ଉଠି ପାରିବ ନାହିଁ ।"

ତନ୍ତୀଟିର ତ ହୁକା ଟାଣିବାକୁ ଭାରି ଇଚ୍ଛା । ସେ ସାକୁଲେଇ ତା ସ୍ତ୍ରୀକୁ କହିଲା "ହେ ଶୁଣ ! ତୁ ଯଦି ମତେ ତମାଖୁ କରିଦେବ

ନା, ମୁଁ ତତେ ଗୁଟେଟି କଥା କହିବି । ପ୍ରତ୍ୟେକର ମୂଲ୍ୟ ହଜାରେ ଟଙ୍କା ।"

ତନ୍ତୀ ତ ବୋକା । ତନ୍ତୀ ସ୍ତ୍ରୀ ଆହୁରି ବୋକ । ସେ ଭାବିଲା, ଗୁଟେଟି କଥା । ଦାମ୍ ଗୁରିହଜାର ଟଙ୍କା । ରାତିକା ରାତି ବଡ଼ଲୋକ, ଏ ସୁବିଧା ଛାଡ଼ିବାର ନୁହେଁ । ସେ ଧଡ଼ପଡ଼ କରି ଉଠି ହୁକା ସଜାଡ଼ିଲା । ତନ୍ତୀଟି ଆନନ୍ଦରେ ବସି ହୁକା ଟାଣିଲା ।

ତନ୍ତୀ ମନ ତ ଖୁସିଥାଏ । ସେ ସ୍ତ୍ରୀକୁ ପାଖରେ ବସାଇଲା । ଗୁଟେଟି କଥା କହିବାକୁ ଆରମ୍ଭ କଲା । ସେତିକବେଳେ ସେ ରାଜ୍ୟର ଯୁବରାଜ ବିଜେ କରିଥାନ୍ତି । ସମସ୍ତଙ୍କ ଘରର କଥାବାର୍ତ୍ତା ଶୁଣିବାକୁ ତାଙ୍କର ଆଗ୍ରହ । ସେ ତନ୍ତୀର କଥା ଶୁଣିବାକୁ କାନ ଡେରିଲେ ।

ତନ୍ତୀ କହିଲା "ଶୁଣ, ଦୁନିଆରେ ଗୁରି ପ୍ରକାର ବୋକା ଅଛନ୍ତି । ଯେଉଁ ଲୋକ ଯୁବତୀ ସ୍ତ୍ରୀକୁ ବାପଘରେ ଛାଡ଼େ ସେ ଏକନମ୍ବର ବୋକା । ଉଚ୍ଚସ୍ତରର ଲୋକଙ୍କ ସାଥିରେ ବନ୍ଧୁତା କରିବା ଲୋକ ଦ୍ୱିତୀୟ ବୋକା । ବିନା ଅନୁରୋଧରେ ମଧ୍ୟସ୍ଥ ହେବା ଲୋକ ତିନି ନମ୍ବର ବୋକା । ଯଥେଷ୍ଟ ପଇସା ହାତରେ ନ ନେଇ ବିଦେଶ ଯାତ୍ରା କରିବା ଲୋକ ହେଲା ଚତୁର୍ଥ ବୋକା ।"

ତନ୍ତୀ ଆଖିରେ ଆଖିଏ ନିଦ । ଏତିକ କହି ସେ ଶୋଇଗଲା । ସ୍ତ୍ରୀଟି ବିଚରା ଗୁରି ହଜାର ମିଳିବା ପାଇଁ ବ୍ୟସ୍ତ । ତା ଆଖିକୁ ନିଦ ନାହିଁ ।

ଏଣେ ରାଜାପୁଅ ଭାବୁଥିଲା—ତନ୍ତୀର କଥା ଅତି ପୁରୁଣା । ଏଥିରେ ନୂତନତ୍ୱ ସିନା ନାହିଁ କିନ୍ତୁ ସାରଗର୍ଭକ । ପ୍ରତି ମଣିଷ ଏହା ପାଳନ କରିବା ଉଚିତ୍ ।



## ଛଳନା

ରାତିର ଅନ୍ଧାର ଗୃହଆଡ଼େ ଘୋଟି ଯାଇଛି । ବିଲୁଆଟିଏ ଛପି ଛପି ସମସ୍ତଙ୍କ ବାଡ଼ିରେ ପଶି ଉଣ୍ଡିଲା । କେଉଁଠି କିଛି ଖାଇବାକୁ ପାଇଲା ନାହିଁ । ସେ ନଗ୍ର ହୋଇ ଗଆଁରଆଡ଼କୁ ମୁହାଁଇଲା । ବାଟରେ ରଜକର ଘର । ତା ବାଡ଼ିରେ ବି ପଶିଲା । ସେଠି ବଡ଼ ବଡ଼ କରେଇ ଥୁଆ ହୋଇଥାଏ । ସବୁଥିରେ ରଙ୍ଗୀନ ପାଣି ।

ବିଲୁଆଟିର ବୟସ ଅଳ୍ପ । ତେଣୁ ସେ ଅନଭିଜ୍ଞ । ସେ କେବଳ ଦୁଧ ଦେଖିଛି । ସେ ଜାଣେ, ଧଳା ପାଣିକୁ ଦୁଧ କହନ୍ତି । ତା'ର ଅନ୍ୟ ରଙ୍ଗୀନ ପାଣି ବିଷୟରେ ଧାରଣା ନାହିଁ । ତେଣୁ ସେ ଧରିନେଲା, ବିଭିନ୍ନ ରଙ୍ଗର ଦୁଧ ଏଠି ଥୁଆ ହୋଇଛି । ଦୁଧ ଟିକ ପିଇ ସେ ଭୋକ, ଶୋଷ ଉଭୟ ନିବାରିବ । ସେଥିପାଇଁ ସେ ଭାରି ଖୁସି ।

ବିଲୁଆଟି ଆଉ ହେଳା କଲାନାହିଁ । କରେଇ ଭିତରକୁ ମୁହଁ ବଢ଼ାଇଲା । କିନ୍ତୁ ମୁହଁ ପାଇଲା ନାହିଁ । ତେଣୁ ଫନ୍ଦ ଉପରୁ ତଳକୁ ଝୁଙ୍କି ପଡ଼ିଲା । ଭାରସାମ୍ୟ ଆଉ ରଖି ପାରିଲା ନାହିଁ । ସିଧାଯାଇ କରେଇ ଭିତରେ ପଡ଼ିଲା । ପାଣିରେ ସେ ଉବୁଟୁବୁ । ଗୁନଆ ହୋଇଗଲା । ପିଇବ କ'ଣ ? ବହୁତ ଆମ୍ପୁଡ଼ା ଆମ୍ପୁଡ଼ି କରି ବାହାରକୁ ଆସିଲା । ସେତେବେଳକୁ ସେ ଗୋଟାସୁଦ୍ଧା ଭୟରେ ଥରୁଥାଏ । ଟିକିଏ ଦମ୍ ନେଲା । ପ୍ରକୃତିସ୍ଥ ହେବାପରେ ଦେଖିଲା, ତାର ଦେହର ରଙ୍ଗ ସମ୍ପୂର୍ଣ୍ଣ ନୀଳ । ଅନ୍ୟ ବିଲୁଆଠାରୁ ସେ ଭିନ୍ନ ।

ଭାବିଲା—ଏ ଘଟଣାର ସେ ସୁବିଧା ନେବ । ଭଗବାନ ତାକୁ ମୟୂର କରି ଦେଇଛନ୍ତି ବୋଲି ସେ ଛଳନା କରିବ ।

ଘରେ ପହଞ୍ଚିବାପରେ ବନ୍ଧୁମାନେ ତାର ନାଳରଙ୍ଗ ଦେଖି ଆଶ୍ଚର୍ଯ୍ୟ । ସମସ୍ତଙ୍କ ତୁଣ୍ଡରେ ଗୋଟିଏ କଥା—"ତୋର କ'ଣ ହେଲା ?"

"ଭଗବାନ ମୋତେ ବର ଦେଲେ । ମୁଁ ଆଉ ବିଲୁଆ ହୋଇ ନାହିଁ, ମୁଁ ଗୋଟିଏ ମୟୂର । ଦେଖ, ମୁଁ କେମିତି ମୟୂର ପରି ଚାଲୁଛି ।" ଏହା ହେଲା ବିଲୁଆଟିର କୈଫିୟତ ।

କୋକିଶିଆଳ ଖାଇ ତା ପାଟିରୁ କଥା ଛଡ଼େଇନେଇ କହିଲା "ମୟୂରର ତ ସୁନ୍ଦର ପୁଚ୍ଛ ଥାଏ । ତାକୁ ସେ ମେଲେଇ ଦିଏ । କିନ୍ତୁ ତୋର କୁକୁର ପରି ଲାଙ୍ଗୁଡ଼ ଅଛି । ଖାରୁପରି ଭୟରେ ତାକୁ ତୁ ଦୁଇଗୋଡ଼ ସନ୍ଧିରେ ଲୁଚେଇ ରଖିଛୁ ।"

ବିଲୁଆଟି ଦେଖେଇ ହୋଇ କହିଲା "ମୁଁ ଗୋଟିଏ ପୁଚ୍ଛ ନ ଥିବା ମୟୂର ।"

ଠେକୁଆ କହିଲା "ମୟୂର ସ୍ୱର କରୁଣ—ହେଲେ ତୁହାଇ ତୁହାଇ ସେ ବୋବାଏ । କିନ୍ତୁ ତୋ କଣ୍ଠରୁ କେବଳ ବାହାରୁଛି ବିଲୁଆର ହୁଉ ହୁଉ ଶବ୍ଦ । ସେଥିରେ ଖାରୁତା ପରିଲକ୍ଷିତ ।"

ବିଲୁଆଟି କହିଲା "ମୁଁ ଏଥର ଘରଚଟିଆଠାରୁ ଗୀତ ବୋଲିବା ଶିଖିବି ।" ବିଲୁଆର ମା ସେଠି ଆସି ହାଜର । ତାକୁ ଦେଖିଦେଇ କହିଲା "ପୁଅରେ, ବିଲୁଆ କେବେ ମୟୂର ହୋଇ ପାରିବ ନାହିଁ । ତୁ କୋଉଠି ତୋ ଦେହକୁ ନୀଳରଙ୍ଗ କରିଛୁ ? ଏ ରଙ୍ଗ ରହିବ ନାହିଁ ।" ଏହା କହି ସେ ସଙ୍ଗେ ସଙ୍ଗେ ଆଞ୍ଜୁଳାଏ ପାଣି ତା ଉପରକୁ ଫିଙ୍ଗିଦେଲା । ବିଲୁଆଟି ଦେହରୁ ରଙ୍ଗପାଣି ଥପ୍ ଥପ୍ ହୋଇ ବୋହିପଡ଼ିଲା ।

"ଯା ଝରଣାରେ ଧୋଇଧାଇ ହୋଇ ଆସିବୁ । ବୃଥାରେ

ଆଉ ସମସ୍ତ ନଷ୍ଟ କର ନାହିଁ ।" ମା'ର ତାର ଥିଲା ଛାପ୍ରଣ୍ଡ ଆଦେଶ ।

ଥା ଥା ମା ମା ହୋଇ ବଳୁଆଟି ଝିରଣାଆଡ଼କୁ ଆଗେଇଲା । ମୁହଁରେ ତାର ଲାଜ । ମୁଣ୍ଡ ତାର ତଳକୁ ଓହଳି ପଡ଼ିଥିଲା ।

ଘବୁଟାଏ—ଛଳନା କଲେ, ଅପଦସ୍ଥ ହେବାକୁ ହୁଏ ।



## ଲୁଣପର ପ୍ରିୟ

ଅନେକ ଦିନତଳେ ଜଣେ ରାଜା ଥିଲେ । ତାଙ୍କର ସାତୋଟି ଝିଅ । ଦିନେ ଝିଅମାନେ ତାଙ୍କପାଖେ ଗେହ୍ଲେଇ ହେଉଥା'ନ୍ତି । କହୁଥାନ୍ତି—"ବାପା ତାଙ୍କର ସବୁ ।" ବାପାଙ୍କ ମନ ବି ଭରିଖୁସି । ସେ ଝିଅମାନଙ୍କୁ ପଚାରିଲେ "ଆଚ୍ଛା ପିଲାଏ, ତମକୁ କଏ ପାଳୁଛି କହିଲ ?"

ଛ'ଟିଯାକ ଝିଅ ଏକାବେଳକେ ସମସ୍ୱରରେ କହି ଉଠିଲେ "ସ୍ୱୟଂ ମହାରାଜ ।" କିନ୍ତୁ ସାନ ଝିଅଟି କିଛି କହିଲା ନାହିଁ । ତାର ନୀରବତା ଦେଖି ରାଜା ଆଶ୍ଚର୍ଯ୍ୟ ହେଲେ । ତା' ଆଡ଼କୁ ଚାହିଁ ରହିଲେ । ସେଥିପ୍ରତି ଗୃହାଣୀରେ ଝିଅଟି ଅସ୍ୱସ୍ତି ବୋଧକଲା । ମନେ ହେଲା—ରାଜା ତାକୁ ଉତ୍ତର ଦେବାପାଇଁ ଯେମିତି ବାଧ କରୁଛନ୍ତି । ସେ ଆଉ ସମ୍ଭାଳି ପାରିଲା ନାହିଁ । କହିଲା "ଅପାର କରୁଣାମୟ ଭଗବାନ ମୋର ପାଳନକର୍ତ୍ତା ।"

ରାଜାଙ୍କର ସାନଝିଅ ସେ । ଅତି ଅଲିଅଳୀ । ରାଜା ସବୁଠୁ ତାକୁହିଁ ବେଶୀ ଭଲ ପାଆନ୍ତି । ତାର କୌଣସି କଥା କେବେ ତଳେ ବି ପଡ଼େନାହିଁ । ଏତେ ଶ୍ରଦ୍ଧା, ଏତେ ସ୍ନେହ, ଏତେ ଆଦର ସେ ମନେରଖିଲା ନାହିଁ । କହିଲା, ଭଗବାନଙ୍କର କରୁଣାରେ ସେ

ଚଳେ । ସେଥିପାଇଁ ରାଜା ବିସ୍ମିତ । ସେଇଦିନୁ ରାଜା ତା' ଉପରେ ବିରକ୍ତ, କ୍ଷୁବ୍ଧ ଆଉ ଅସନ୍ତୁଷ୍ଟ ।

ସମୟ କାହାରିକୁ ଅପେକ୍ଷା କରେ ନାହିଁ । କିଛିଦିନ ଚାଲିଗଲା, ଦିନେ ରାଜା ଝିଅମାନଙ୍କ ସାଙ୍ଗେ ଖୁସିଗପ କରୁଥାଆନ୍ତି । ପିଲାମାନେ ବି ତାଙ୍କୁ ଖୁବ୍ ଭଲ ପାଆନ୍ତି ବୋଲି କହୁଥାଆନ୍ତି । ରାଜା ସେମାନଙ୍କୁ ପଚାରିଲେ "ହଇରେ, ତମେ ତ କହୁଛ ମତେ ଭଲପାଅ । କେମିତି ଭଲ ପାଅ, କହିଲ ।"

ଛ'ଟିଯାକ ଝିଅ ଏକାବେଳେକେ ଏକସ୍ୱରରେ କହି ଉଠିଲେ "ବାପା ! ମିଠାପରି ।"

ସାନ ଝିଅଟି ସେମାନଙ୍କର ପାଟି ବନ୍ଦ ହେବାପରେ ଆସ୍ତେ ଆସ୍ତେ କହିଲା "ଲୁଣପରି ।" ସାନ ଝିଅର ଉତ୍ତରରେ ରାଜା ରାଗିକରି ନିଆଁ । ତାଙ୍କର ମନେହେଲା ଝିଅ ତାଙ୍କୁ ଅପମାନ ଦେଉଛି ।

ଏହା ଭିତରେ ଅନେକ ଦିନ ଚାଲିଗଲା । ସାନ ଝିଅର ବିବାହ ବୟସ ହୋଇଗଲାଣି । ସେ ସୁନ୍ଦରୀ, ବୁଦ୍ଧିମତୀ, ବହୁଗୁଣ-ସମ୍ପନ୍ନା । ତେଣୁ ବହୁ ଜାଗାରୁ ଉତ୍ତମ ପ୍ରସ୍ତାବ ଆସିଲା । ରାଜା କିନ୍ତୁ ଅରାଜି । ବିଭିନ୍ନ ଆଲୋଚନା ଏ ବିଷୟରେ ହୁଏ । ରାଜାଙ୍କଠାରୁ ଉତ୍ତର ମିଳେ ନାହିଁ । କିନ୍ତୁ ରାଜାଙ୍କୁ ଭରସିକରି କେହି କିଛି କହି ପାରନ୍ତି ନାହିଁ ।

ସେଦିନ ରାଜା ପାରିଧିକୁ ବିଜେ କରିଥିଲେ । ଜଙ୍ଗଲ ଶେଷ ମୁଣ୍ଡରେ କୁଡ଼ିଆଟିଏ । ରାଜା ସେଠି ଅଟକିଗଲେ । ଏପରି ଅପନ୍ତରା ଜାଗାରେ ମଣିଷ ରହିବା ଦେଖି ବିସ୍ମିତ ହେଲେ । କାରଣ ଜାଣି-ବାକୁ ସେଠାକୁ ସେ ନିଜେ ବିଜେ କଲେ ।

ଦେଖିଲେ, କୁଡ଼ିଆରେ ଯୁବକଟିଏ । କୁଷ୍ଠ ରୋଗଗ୍ରସ୍ତ, ଚାଲିବାକୁ ଅକ୍ଷମ । ଖାଦ୍ୟାଭାବରେ କଣ୍ଠା ହୋଇଗଲାଣି । ଦେହ ବିବର୍ଣ୍ଣ । ଅପରିଷ୍କାର । ରାଜା ସେଇଠୁ ଫେରିଆସିଲେ—ସିଧା ଉଆସକୁ । ଶିକାରକୁ ଆଉ ଗଲେନାହିଁ ।

ରାଜା ଉଆସରେ ପହଞ୍ଚି ବିବାହର ଆୟୋଜନ ପାଇଁ ଆଦେଶ ଦେଲେ । ସେ ବିଷୟରେ କାହାକୁ ପଦେ ବି କିଛି କହିଲେ ନାହିଁ । ଏମିତି କି ରାଣୀଙ୍କୁ ବି । ଯେ ଯାହା ପଚାରିଲା, ନିରୁତ୍ତର ।

ସହରର ଉପକଣ୍ଠରେ ବେଢାଟିଏ ହେଲା । ଲୋକେ ଏ ରଙ୍ଗଢଙ୍ଗ ଦେଖି ବିସ୍ମିତ । ପରିଷଦ ସ୍ତମ୍ଭୀଭୂତ । ରାଣୀମହଲ ବ୍ୟସ୍ତବ୍ୟସ୍ତ । କିନ୍ତୁ ରାଜା ଆଉ ତାଙ୍କ କନିଷ୍ଠା କନ୍ୟା ନିର୍ବିକାର ।

ବିବାହ ଦିନ ରାଜାଙ୍କ ଆଦେଶରେ ଜଙ୍ଗଲ ଉପକଣ୍ଠରୁ କୁଷ୍ଠ ରୋଗୀକୁ ଅଣାଗଲା । ତାକୁ ବର କରି ରାଜକୁମାରୀଙ୍କୁ ତା ହସ୍ତରେ ଅର୍ପଣ କରାଗଲା । ସମସ୍ତେ ଆହା ଆହା କଲେ । ସଭିଙ୍କ ଆଖିରେ ଲୁହର ଧାର । କେହି ବି ବାଦ ଗଲେନାହିଁ । ମନେହେଲା ଗଛ-ପତ୍ର, ପଶୁପକ୍ଷୀ ସମସ୍ତେ ଯେମିତି କାନ୍ଦୁଛନ୍ତି । ବ୍ୟତିକ୍ରମ କେବଳ ରାଜକୁମାରୀ ଓ ରାଜା । ରାଜକୁମାରୀ କାଠ ପିତୁଳାଭଳି ବସି-ଥାଏ । ଦେଖଣାହାରୀ କହୁଥାଆନ୍ତି "ଏ ରାଜା ବାପନୁହେଁ, ଶତ୍ରୁ ।"

ବିବାହ ସରିଲା । ବର କନ୍ୟାଙ୍କୁ କୁଷ୍ଠ ରୋଗୀର କୁଡ଼ିଆକୁ ପଠାଗଲା । ସାଥିରେ ଯୌତୁକ ତ ଦୂରର କଥା, ଚାଉଳ ଅଞ୍ଜୁଳାଏ ବି ଦିଆଗଲା ନାହିଁ ।

ରାଜା ଝିଅ କୁଡ଼ିଆରେ ପହଞ୍ଚିଲା । ଦେଖିଲା—କୁଡ଼ିଆରେ ଦାନାଟିଏ ବି ନାହିଁ । ଏଣେ ସ୍ୱାମୀ ତାର ପଙ୍ଗୁ । ତଥାପି ସେ ଅବିଚଳିତ । ବାପାପ୍ରତି ତାର ଘୃଣା ନାହିଁ । ବିଦ୍ୱେଷଭାବ ବି ନାହିଁ ।

ସେ ଭାବେ—ସବୁ ଭଗବାନଙ୍କ ଇଚ୍ଛା । ସବୁ ହିଁ ତାଙ୍କର ଆଶୀର୍ବାଦ । ସେଇ କରୁଣାମୟଙ୍କ ନିର୍ଦ୍ଦେଶରେ ସବୁ ହେଉଛି । କାହାକୁ ଦୋଷ ଦେଇ କିଛି ଲାଭ ନାହିଁ ।

ଘରେ ବସିରହିଲେ, ସେ ତ ଉପାସରେ ମରିବ । ତା ସାଥିରେ ପଙ୍ଗୁଟିଏ ବି ମରିଯିବ । ଆତ୍ମହତ୍ୟା ଆଉ ଜୀବହତ୍ୟା ଦୁଇଟି ଦୋଷ ତାକୁ ଲାଗିବ । ସେଥିପାଇଁ ସ୍ଥିର କଲା, ଭିକ୍ଷାବୃତ୍ତି ଅବଲମ୍ବନ କରିବ ।

ସେ ଯୁବତୀ । ସ୍ୱାସ୍ଥ୍ୟବତୀ । ସୁନ୍ଦରୀ । ରାଜକନ୍ୟା ଯୋଗୁ ପରିପାଟୀ ବି ଅଛି । ତାର ଚାଲିବାଧି ଲୋଭନୀୟ । ଚିତ୍ତାକର୍ଷକ । ଆକର୍ଷଣୀୟ । ଲୋକଙ୍କର ଲୋଲୁପଦୃଷ୍ଟି ଏଡ଼ିବା କଷ୍ଟକର । ସେଥିପାଇଁ ସେ ତାର ସ୍ୱାମୀର ପରାମର୍ଶ ନେଲା ।

ହେଲା—ପଙ୍ଗୁ ହେଲେ ବି ସେ ତାର ସ୍ୱାମୀ । ଦେବତା, ଇହ ଆଉ ପରକାଳର ସାଥୀ । ମୁକ୍ତିଦାତା । ତାଙ୍କୁ ଅବଜ୍ଞା ତ ଦୂରର କଥା, ହେୟଜ୍ଞାନ କରିବା ମଧ୍ୟ ଅନୁଚିତ । ଦୋଷାବହ । ତାଙ୍କ ପରାମର୍ଶ ଲୋଡ଼ିଲା । ସେ ତାର ସବୁ କଥାରେ ରାଜିଥିଲେ । କଥା ହେଲା—ପରଦିନଠାରୁ ସେ ଭିକ୍ଷାପାଇଁ ଯିବା । ସାଥିରେ ନେଇଯିବ ତାର ସ୍ୱାମୀଙ୍କୁ ।

ପ୍ରତିଦିନ ରାତି ଥାଇ ସେ ଉଠେ । ନିତ୍ୟକର୍ମ ସାରେ । ତାପରେ ସ୍ୱାମୀଙ୍କୁ ଉଠାଏ । ପରିଷ୍କାର କରିଦିଏ । ଯାହାଥାଏ, ତାଙ୍କୁ ଖୁଆଏ । ବଳିଲେ ନିଜେ ଖାଏ । ତାପରେ ଟୋକେଇରେ ତାଙ୍କୁ ବସାଇ ବାହାରକୁ ବାହାରେ । ଦିନଯାକ ଦୁଆର ଦୁଆର ବୁଲି ଭିକମାଗେ । ଯାହା ମିଳେ କୁଡ଼ାଇଆକୁ ଧରି ଫେରେ । ତାକୁ ରାନ୍ଧି ପୁଣି ସ୍ୱାମୀଙ୍କୁ ଖୁଆଏ । ପରଦିନ ସକାଳକୁ ତାଙ୍କପାଇଁ ରଖେ । ଯାହା ବଳେ ତାକୁ ଖାଏ । ଅଧିକା ହେଲେ ପରଦିନ ପାଇଁରଖେ ।

ଏଥି କର୍ମ କରେ । ଦୁଃଖ ତାର ନାହିଁ । ସମ୍ମାନରେ ଆଞ୍ଚ ଆସୁଛି ବୋଲି ଲଜ୍ଜା ନାହିଁ । ଏ କର୍ମରେ ତାର ଆନନ୍ଦ । ଆତ୍ମ-ସନ୍ତୋଷ ।

ସମୟ ଗଡ଼ିଗୁଲିଛି । ଅନେକ ଦିନ ଅତୀତ ହେଲାଣି । ବର୍ତ୍ତମାନ ତାର ଆଉ କମନୀୟତା ନାହିଁ, ସୌନ୍ଦର୍ଯ୍ୟ ତାର ଉଡ଼ିଯାଇ ଗଲାଣି । ଦେହ ରୁକ୍ଷ । ଖରା କାକର ଖାଇ କଳାକାଠ ।

ଭିକ ମାଗି ମାଗି ପାଖ ଗାଁ ସବୁ ସରିଆସିଲାଣି । ଲୋକେ ବି ଏଣିକି ମନା କଲେଣି । ସେଦିନ ତାକୁ ଦୂରଗାଁକୁ ଭିକମାଗିବାକୁ ଯିବାକୁ ହେବ । ବାଟ ଅନେକ । ମଝିରେ ଘଞ୍ଚ ଜଙ୍ଗଲ । ତାର ଭୟ ନାହିଁ । ସବୁବେଳେ ଭଗବାନଙ୍କ ଉପରେ ଆସ୍ଥା । ଯାହା ହେଉଛି, କରୁଣାମୟଙ୍କ ନିର୍ଦ୍ଦେଶ, ତାର ମଙ୍ଗଳ ପାଇଁ ।

ସକାଳୁ ସକାଳୁ ସେ ବାହାରି ପଡ଼ିଲା । ମୁଣ୍ଡରେ ଟୋକେଇ ସେଥିରେ ତାର ପଙ୍ଗୁ ସ୍ୱାମୀ । ଦୂର ବାଟ ଗୁଲିବାରେ ସେ କ୍ଳାନ୍ତ ଆଉ ଅବଶ । ମୁଣ୍ଡରେ ଓଜନ ମାଡ଼ିପଡୁଛି । ସେ ଆଉ ପାରୁନାହିଁ । ବାଟରେ ଗୋଟିଏ ସୁନ୍ଦର ପୁଷ୍କରଣୀ ପଡ଼ିଲା । ସ୍ୱାମୀ ତାର କହିଲେ—ତୁମକୁ ବହୁତ ବାଟ ଗୁଲି ବାକୁ ହେବ । ମୋତେ ଏଇଠି ବସେଇ ଦିଅ । ପାଖ ଗାଁରୁ ଦି'ଟା ଭିକ ମାଗିଆଣ । ତାପରେ ଗୁଲିଯିବା ।"

ସ୍ୱାମୀଙ୍କର କଥା ତାର ଶିରୋଧାର୍ଯ୍ୟ । ଦ୍ୱିଖଣ୍ଡୁରେ ଏକାକୀ ହୋଇ ବୁଲିବାର ଭୟ ତାର ନାହିଁ । ଦୁଆରୁ ଦୁଆର ବୁଲି ଭୟ ତାର କମି ଆସିଲାଣି । ଏଣେ ସେ କ୍ଳାନ୍ତ । ଅବସନ୍ନ । ଟୋକେଇଟି ବୋହିବାରେ ଅକ୍ଷମ । ତେଣୁ ପୋଖରୀ ପାଖରେ ସେ ଟୋକେଇଟି ଥୋଇଦେଲା । ଏକାକୀ ଗୁଲିଲା ଭିକମାଗି ।

ପଙ୍ଗୁଟି ବସିଥାଏ ଟୋକେଇରେ । ପୋଖରୀ ଆଡ଼କୁ ତାର

ଲକ୍ଷ୍ୟ । ହଠାତ୍ ସେ ଦେଖିଲା—ଏକ ଅଭିନବ ଦୃଶ୍ୟ । ଆରପଟେ ବହୁ କାଉ ରୁଣ୍ଡ । ଗୋଟି ଗୋଟି କରି ପୋଖରୀରେ ବୁଡୁଥାନ୍ତି । ସେଥିରେ ସେମାନଙ୍କର ରଙ୍ଗ ଧଳା ହୋଇ ଯାଉଥାଏ । ତାପରେ ସେମାନେ ଉଡ଼ିଯାଉ ଥାଆନ୍ତି ।

ଦୃଶ୍ୟଟି ଅଦ୍ଭୁତ । ଆଶ୍ଚର୍ଯ୍ୟ ଜନକ । କୁଷ୍ଠ ରୋଗୀଟି ଉଦ୍-ବୋଧିତ ହେଲା । ନିଜର ଭାଗ୍ୟ ପରୀକ୍ଷା ପାଇଁ ଟୋକେଇରୁ ସେ ଗଡ଼ିପଡ଼ିଲା । ଘୁଷୁରି ଘୁଷୁରି ସିଧା ପୋଖରୀରେ ଯାଇ ପଶିଲା । ମୁହୂର୍ତ୍ତକ ମଧ୍ୟରେ ତାର ସମସ୍ତ ଅଙ୍ଗ ଭରପୁର ହୋଇଗଲା । ରୋଗର ଚିହ୍ନବର୍ଣ୍ଣ ଦେହରେ ତାର ନାହିଁ । ସେ ସୁସ୍ଥ । ସ୍ୱାସ୍ଥ୍ୟବାନ । ଦିବ୍ୟ ସୁନ୍ଦର ଯୁବକ । ନିଜକୁ ଦେଖି ସେ ନିଜେ ବି ଚିହ୍ନିପାରୁ ନାହିଁ । ସବୁ ଆଶ୍ଚର୍ଯ୍ୟ, ସବୁ ଅଭିନବ । ସେଠୁ ଆଉ କୁଆଡ଼େ ଗଲାନାହିଁ । ସେଇଠି ସେ ସ୍ତ୍ରୀକୁ ଅପେକ୍ଷା କରି ବସିଲା ।

ଭିକ୍ଷାଧରି ସ୍ତ୍ରୀ ତାର ଫେରିଲା । ଦେଖିଲା—ଟୋକେଇଟି ଶୂନ୍ୟ । ସ୍ୱାମୀ ତାର ସେଥିରେ ନାହାନ୍ତି । ତା ପରିବର୍ତ୍ତେ ଜଣେ ସୁନ୍ଦର ଯୁବକ ସେଠି ବସିଛି । ସେ ସ୍ତମ୍ଭୀଭୂତ । ମନରେ ଅସୀମ ଦୁଃଖ । ଏତେଦିନର କଷ୍ଟ ଆଉ ପରିଶ୍ରମ ସବୁ ତାର ବୃଥା । ଏକୁଟିଆ ମୁହୂର୍ତ୍ତଟିଏ ବି ସେ ତାଙ୍କୁ ଛାଡ଼ିନାହିଁ । କେବଳ ତାଙ୍କର କଥାରେ ଛାଡ଼ିଦେଇ ଭିକ୍ଷା ପାଇଁ ଗଲା । ଭଗବାନଙ୍କ ଦୟା କ'ଣ ସେ ଜାଣିପାରିଲା ନାହିଁ । ସେ ସେଇଠି ବସି ପଡ଼ିଲା । କିଛି ସମୟ ପରେ ପ୍ରକୃତିସ୍ଥ ହେବାରୁ, ଯୁବକଟିକୁ ତାର ସ୍ୱାମୀ କଥା ପଚାରିଲା ।

ଯୁବକଟିର ଉତ୍ତରରେ ସେ ବିସ୍ମିତ । କିଂ କର୍ତ୍ତବ୍ୟବିମୁଢ଼ ଯୁବକଟି ବାରମ୍ବାର ନିଜକୁ ତାର ସ୍ୱାମୀ ବୋଲି କହୁଥାଏ । କିନ୍ତୁ ରାଜାଝିଅ ଅବୁଝା । ବରଂ ତା ମନରେ ସନ୍ଦେହ ଉଙ୍କି ମାରୁଥାଏ ।

ଯୁବକଟିକୁ ତାର ସନ୍ଦେହ । ତେଣୁ ସେଠାରୁ ସେ ପଳାଇବାକୁ ପ୍ରସ୍ତୁତ ।

ସ୍ୱାମୀ ତାର ମନର କଥା ବୁଝିପାରିଲେ । ପାଣିରେ ନ ବୁଡ଼ାଇଥିବା ଆଙ୍ଗୁଠିଟିକୁ ତାକୁ ଦେଖାଇଲେ । ଏବେ ବ ଏହା ରୋଗଯୁକ୍ତ । ଅସମ୍ପୂର୍ଣ୍ଣ । ଅବଧ ରହିଛି, ଆଉ ଅଧିକ ଛିଣ୍ଡି ଯାଇଛି । ତାକୁ ଦେଖିଲା ପରେ ସ୍ୱାମୀର କଥାରେ ସ୍ତ୍ରୀଟିର ହୃଦବୋଧ ହେଲା । ଏଥର ଉଭୟେ ମହାଖୁସି । ଆଙ୍ଗୁଠିଟିକୁ ପୁନର୍ବାର ସେ ପାଣିରେ ବୁଡ଼େଇ ସମ୍ପୂର୍ଣ୍ଣ ରୋଗମୁକ୍ତ ହେଲେ ।

ସ୍ୱାମୀଟି କହିଲେ ଯେ ସେ ଜଣେ ରାଜକୁମାର । ଭାଗ୍ୟର ବିପର୍ଯ୍ୟୟ ପାଇଁ ସେ ହେଲେ ପଙ୍ଗୁ । ସେ ରାଜାଙ୍କର ଉତ୍ତରାଧିକାରୀ । ଏଥର ତାଙ୍କୁ ରାଜ୍ୟକୁ ଫେରିଯିବାକୁ ହେବ ।"

କୁଡ଼ିଆକୁ ଫେରିବାର ଆବଶ୍ୟକତା ଆଉ ନଥିଲା । ଉଭୟେ ରାଜକୁମାରଙ୍କ ରାଜ୍ୟକୁ ଚାଲିଲେ । ଯୁବରାଜଙ୍କର ରୋଗମୁକ୍ତି ଆଉ ସସ୍ତ୍ରୀକଆଗମନର ଖବର ମୁହୂର୍ତ୍ତିକ ମଧ୍ୟରେ ଜଙ୍ଗଲର ନିଆଁ ଭଳି ରାଜ୍ୟସାରା ଖେଳିଗଲା । ସମସ୍ତେ ମହାଖୁସି । ରାଜଉଆସରେ ଆନନ୍ଦର ମହୋତ୍ସବ । ରାଜ ଦମ୍ପତିଙ୍କ ସସମ୍ମାନେ ସମ୍ବର୍ଦ୍ଧନା ଦିଆଗଲା ।

ପୁତ୍ରର ଭାଗ୍ୟ ବିପର୍ଯ୍ୟୟ ପରେ ବୃଦ୍ଧରାଜା ଶଯ୍ୟାଶାୟୀ ହୋଇଥିଲେ । ପୁତ୍ର ଆଗମନ ବାର୍ତ୍ତାରେ ସେ ହେଲେ ଉତ୍‌ଫୁଲ୍ଲ । ସୁସ୍ଥ । ଅଳ୍ପଦିନ ପରେ ରାଜ୍ୟଭାର ପୁଅ ହାତରେ ସମର୍ପଣ କରି ସେ ବାନପ୍ରସ୍ଥ ଗଲେ ।

ନୂଆ ରାଜା ହୃଦୟବାନ୍ । କ୍ଷମା । ପ୍ରଜାବତ୍ସଳ । ରାଣୀ ତାଙ୍କଠାରୁ ଆହୁରି ବଳି । ତାଙ୍କର ଶାସନରେ ସମସ୍ତେ ଖୁସି ।

ନୂଆ ରାଣୀଙ୍କୁ ଦେଖି ସମସ୍ତେ ଆନନ୍ଦିତ । ତାଙ୍କର ଭିକ୍ଷୁମାନଙ୍କ ପାଇଁ ଦରଦ ବହୁତ । ସେଥିପାଇଁ ତାଙ୍କର ଦିନର ପ୍ରଥମ କର୍ତ୍ତବ୍ୟ

ସ୍ୱହସ୍ତରେ ଭିକ୍ଷାଦାନ । ତା'ପରେ ଯାଇ ମଣୋହି ହୁଏ । ଯଦି କୌଣସି ଭିକ୍ଷୁର ଆପତ୍ତିଥାଏ, ତାକୁ ଭିଆସକୁ ଡାକି ତାର ସମାଧାନ ପାଇଁ ବ୍ୟବସ୍ଥା କରନ୍ତି ।

ଦିନକର କଥା । ସବାକୁ ରାଣୀ ଭିକ୍ଷାଦାନ କରୁଥାଆନ୍ତି । ସେଦିନ ଅନେକ ଭିକ୍ଷାର୍ଥୀ । ରାଣୀ ଭିକ ଦେଉ ଦେଉ ଅଟକିଗଲେ । ଆଗରେ ବୁଢ଼ାଟିଏ । ଅତି ପରିଚିତ ଚେହେରା । ବାରମ୍ବାର ତାଙ୍କୁ ଅନାଇଲେ । ସନ୍ଦେହ ଆଉ ତାଙ୍କର ନ ଥିଲା । ସେ ଯେ ତାଙ୍କର 'ବାପା' ଏ ବିଷୟରେ ସେ ନିଶ୍ଚିତ ହେଲେ । ସେ ଏଠିକୁ କେମିତି ଓ କାହିଁକି ଯେ ଆସିଲେ ତାହା ତାଙ୍କୁ ଆଶ୍ଚର୍ଯ୍ୟ କଲା । ତା'ପରେ ତର ତର ହୋଇ ଅନ୍ୟମାନଙ୍କୁ ଭିକ୍ଷାଦେଇ ବିଦା କରିଦେଲେ । ବୁଢ଼ାଟିକୁ ଭିଆସ ଭିତରକୁ ଡାକି ଆଣିଲେ ।

ଭିଆସରେ ବୁଢ଼ାର ଚର୍ଚ୍ଚା ହେଲା । ତାଙ୍କୁ ପରିଷ୍କାର ହେବାକୁ କୁହାଗଲା । ତାପରେ ନୂଆଲୁଗା ଦିଆଗଲା । ରାଣୀଙ୍କର ଦରିଦ୍ର-ନାରାୟଣ ସେବା କଥା ସମସ୍ତେ ଜାଣନ୍ତି । ସେଥିପାଇଁ ଏପରି ବ୍ୟବହାର ପାଇଁ ବୁଢ଼ା ବି କିଛି ଭାବୁ ନଥିଲା । ବରଂ ଭାବୁଥିଲା —ନୂଆରାଣୀ ବିଷୟରେ ଯାହା ସବୁ ଶୁଣିଛି, ତା ଗପନୁହେଁ, ବରଂ ସତ୍ୟ ।

ରାଣୀ ବୁଢ଼ାକୁ ପାଖରେ ବସାଇ ବିଭିନ୍ନ ପ୍ରକାର ମିଠା ସବୁ ଖୁଆଇଲେ । ବହୁଦିନୁ ବୁଢ଼ା ଥିଲା ଉପବାସୀ । ବିକଳିଆ ହୋଇ କିଛି ଖାଇଗଲା । ତାପରେ ହାତ ତାର ଆପେ ଆପେ ଅଟକିଗଲା । ରାଣୀ ଆହୁରି ମିଠା ଖାଇବାକୁ ବାଧକଲେ । ବୁଢ଼ା କହିଲା— "ନାଇଁ ରାଣୀମା, ମୁଁ ଆଉ ଜମା ମିଠା ଖାଇପାରିବି ନାହିଁ । ମିଠା ମୋ ଭୁଣ୍ଡ ବାନ୍ଧି ଦେଲାଣି । ଅବଶ୍ୟ ମୋ ହେକ ମରିନାହିଁ । କିନ୍ତୁ କିଛି ଖାରା ଖାଇବାକୁ ଦେଲେ ପୁଣି ମିଠା ଖାଆନ୍ତି ।"

ରାଣୀ କିନ୍ତୁ ମିଠା ଖାଇବା ପାଇଁ ବାଧ୍ୟକଲେ । ବୁଢ଼ା ଶେଷରେ ନିରୁପାୟ ହୋଇ କହିଲା "ରାଣୀ ମା, ଖାଲି ମିଠା ଖାଇ ହେବନାହିଁ । ଖାରା ଖାଇସାରିଲା ପରେ ମିଠା ଖିଆହୁଏ । ମିଠା ଖାଇକରି ମଣିଷ ବଞ୍ଚେନାହିଁ । ଖାରା ଖାଇ ମଣିଷ କିନ୍ତୁ ବଞ୍ଚେ । ଖାରା ନ ହେଲେ ନ ଚଳେ । ମିଠା ସୌଖୀନ୍ ଖାଦ୍ୟ । ସେ ଅଧିକା କଥା ।

ରାଣୀ ତାଙ୍କ ବାପାଙ୍କ ମୁହଁକୁ ଅନାଇ ଥାଆନ୍ତି । ଭାବୁଥାନ୍ତି ଲୁଣପରି ପ୍ରିୟ' କହି କ ଦଣ୍ଡ ନ ଭୋଗିଚନ୍ତି । ପଚାରିଲେ— "ତାହାହେଲେ ଲୁଣ ତମର ପ୍ରିୟ । ମିଠା ନୁହଁ ।"

ବୁଢ଼ା ଆଖିରେ ଲୁହ । ଦୀର୍ଘଶ୍ୱାସଟିଏ ପକାଇ କହିଲା—"ହଁ ରାଣୀ ମା ! ସେଇ କଥା ମୋର ସାନଝିଅ କହିଥିଲା । ତାକୁ ମୁଁ ଘରୁ ବିଦା କରିଦେଲି । କେବଳ ସେତିକି ନୁହେଁ, ଜଣେ କୁଷ୍ଠ-ରୋଗୀ ସଙ୍ଗେ ବିବାହ ମଧ୍ୟ ଦେଇଦେଲି । କେବଳ ନିଜର ଆତ୍ମ ବଡ଼ିମା ପାଇଁ । ମୁଁ ଜଣେ ରାଜା । ମୋର ବି ରାଜ୍ୟ ଥିଲା । ଝିଅକୁ ବିନା ଦୋଷରେ ଦଣ୍ଡଦେବା ପରେ ବିପତ୍ତି ମୋର ମାଡ଼ିଆସିଲା । ପ୍ରଥମେ ରାଣୀ ଝିଅର ମର୍ମନ୍ତୁଦ ଦୁଃଖରେ ଶଯ୍ୟାଗତ ପଡ଼ିଲେ । ସେ ଆଉ ବିଛଣାରୁ ଉଠି ନାହାନ୍ତି । ପ୍ରଜାମାନେ ଭାବିଲେ, ମୁଁ ଗର୍ବୀ । ଅହଂଭାବ ମୋର ଖୁବ୍ ବେଶୀ । ମୁଁ ନ୍ୟାୟୀ ହେବାକୁ ଅକ୍ଷମ । ସେମାନଙ୍କର ଧାରଣା ହେଲା "ନିଜ ଝିଅକୁ କ୍ଷମା ମୁଁ ତ ଦେଇ ପାରିଲି ନାହିଁ, ମୁଁ ପ୍ରଜାବତ୍ସଳ ହୋଇପାରିବି ନାହିଁ । ମୁଁ ନିର୍ଦ୍ଦୟ । ରାଜଗାଦିରେ ମୋଭଳି ଲୋକ ବସିଲେ, ବିପଦର ସମ୍ଭାବନା ଅଧିକ । ତେଣୁ ମୋ ବିରୁଦ୍ଧରେ ହେଲା ବିଦ୍ରୋହ । ପରିଷଦ ମଧ୍ୟ ମୋତେ ମନ୍ତ୍ରଣା ଦେଲେ ନାହିଁ । ସୈନ୍ୟମାନଙ୍କର ମୋଉପରେ ଆସ୍ଥା ନଥିଲା ।

ଏହାର ସୁଯୋଗ ନେଇ ଶତ୍ରୁମାନେ ମୋ ଦେଶ ଆକ୍ରମଣ କଲେ । ପ୍ରଜାମାନେ ଆକ୍ରମଣକାରୀଙ୍କୁ ସମର୍ଥନ କଲେ । ସୈନ୍ୟମାନେ ମୋ କଥା ମାନିବାକୁ ଅରାଜି । ଉପାୟ ନଥିଲା । ରାଜ୍ୟରୁ ଦିନେ ରାତିରେ ପଳାଇ ଆସିଲି । ପ୍ରଥମେ ମୋର ଦୋଷ ସ୍ୱୀକାର କରିବାକୁ ଝିଅର କୁଡ଼ିଆକୁ ଗଲି । କୁଡ଼ିଆର ନାମ ଗନ୍ଧ ନଥିଲା । ସେଠି ବହୁତ ଭାବିଲି । ବସି ରହିଲି ଦିନ୍‌ରାତିଏ । ଭାବୁଥିଲି— ଆତ୍ମହତ୍ୟା କରିବାକୁ । ପାରିଲି ନାହିଁ । ସେ ସାହସ ମୋର ନଥିଲା । ତାପରେ ଭିକ୍ଷାବୃତ୍ତି ଅବଲମ୍ବନ କଲି । ସେଇଦିନୁ ମୁଁ ଭିକ୍ଷୁ । ମୋତେ ଦି'ଟା ଖାଇବାକୁ ଦେଇଥିବାରୁ ତମପାଖେ ମୁଁ କୃତଜ୍ଞ ।" ବାଷ୍ପରୁଦ୍ଧ କଣ୍ଠରେ ବୁଢ଼ା କହିଲା—"ରାଣୀ ମା, ମୋତେ ତମର ପରିଚୟ ଦିଅ । ତମେ କେଉଁ ରାଜାର ଝିଅ ମତେ କୁହ ।"

ରାଣୀଙ୍କ ଆଖି ଲୋତକପୂର୍ଣ୍ଣ । ଅବାଧରେ ଅଶ୍ରୁର ଧାର ଗଡ଼ି ଚାଲିଛି । ସେ ବୁଢ଼ାକୁ କୁଣ୍ଢେଇ ପକେଇ କହିଲେ—"ବାପା, ମୁଁ ତମର ସାନ ଝିଅ ।

ବୁଢ଼ା ପ୍ରଥମେ ବିଶ୍ୱାସ କରିପାରିଲା ନାହିଁ । ବାରମ୍ବାର ଝିଅ ମୁହଁକୁ ଚାହିଁଲା । ତାପରେ ଭୋ ଭୋ ହୋଇ କାନ୍ଦିଲା ।

ବାପା ଝିଅ ପ୍ରକୃତିସ୍ଥ ହେଲେ । ଝିଅ ତା ଜୀବନର ଅଭିଜ୍ଞତା ଗୋଟି ଗୋଟି କରି ବାପାଙ୍କୁ କହିଲା । ତାପରେ କହିଲା— "କରୁଣାମୟ ଭଗବାନଙ୍କ ଆଶୀର୍ବାଦରେ ଆମେ ସମସ୍ତେ ଚଳୁଛୁ । ମଣିଷର କିଛି ହାତ ନାହିଁ । ତାର ଗର୍ବ, ଅହଂକାର, ଆତ୍ମାଭିମାନ ସବୁ ମିଥ୍ୟା । ସ୍ୱାଭିମାନ ଆଉ ଅହଙ୍କାର କେବଳ ପ୍ରବଞ୍ଚନା ।"



## ମୂଷା ଓ ଓଟ

ବହୁ ପୁରୁଣା ଦିନର କଥା । ଜଙ୍ଗଲରେ ମୂଷାଟିଏ ରହୁଥାଏ । ସେଠିକି ମଣିଷ ନଥାନ୍ତି—ତେଣୁ ସେ ନିର୍ଭୟ । ଖାଇବାକୁ ସେଠି ବି ପ୍ରଚୁର । କାମ ତ କରିବାକୁ ସେଠି କିଛି ନ ଥାଏ, ତେଣୁ ସମସ୍ତ ତାର ବଳେ । ସେ ଗାତ ମୁହଁରେ ବସି ସବୁ ଜୀବଜନ୍ତୁଙ୍କ ଯିବା ଆସିବା ଲକ୍ଷ୍ୟକରେ । ବେଳେ ବେଳେ ତାଙ୍କୁ ଡାକେ । ଗପସପ କରେ । ତାଙ୍କର ଖବର ବି ରଖେ, ନିକିନିଖି କରି । ଦରକାର-ବେଳେ ସେମାନଙ୍କୁ ସହାଯ୍ୟ ବି କରେ । ସମସ୍ତେ ତାର ପରିଚିତ । ଅନେକ ତାର ବନ୍ଧୁ ।

ଦିନକର କଥା, ଜଙ୍ଗଲରେ ଗୋଟିଏ ନୂଆ ଜନ୍ତୁର ଆବିର୍ଭାବ ହେଲା । ଅଦ୍ଭୁତ ସେଇଟି, ଦେହର ଅଙ୍ଗସବୁ ଅବାଗିଆ । ବେକଟା ଖୁବ୍ ଲମ୍ବା । ପିଠିରେ କୁଜ, ବେଶ୍ ବଡ଼ । ଗୋଡ଼ଗୁଡ଼ାକ ଡେଙ୍ଗା ଡେଙ୍ଗା । ସବୁଜପତ୍ର ତାର ପ୍ରିୟ ଖାଦ୍ୟ । ଯେଉଁଠି ଦେଖେ ବାକଳ ହୋଇ ଖାଏ, ସତେ କି ବହୁଦିନରୁ କିଛି ଖାଇନାହିଁ ।

ନବାଗନ୍ତୁକକୁ ମୂଷାଟି ଦେଖି ଆଶ୍ଚର୍ଯ୍ୟ ! ଆଗରୁ ଏପରି ଜୀବ ସେ କେବେ ଦେଖି ନ ଥିଲା । କେଉଁଠୁ ଓ କିପରି ସେ ଆସିଲା ଜାଣିବାକୁ ମୂଷାଟି ଆଗ୍ରହୀ । ପାଖକୁ ଗଲା, ଅତି ନମ୍ରଭାବରେ ପଚାରିଲା, "ଭାଇ ! ତୁମେ କିଏ ? କେଉଁଠୁ ଆସିଲ ?"

ମୂଷାର ଏ ପ୍ରଶ୍ନରେ ପଶୁଟି ବିସ୍ମିତ ! ବିରକ୍ତ ବି । ଏଡ଼ିକି ବୋଲି ବଳକେ ଜୀବ, ଆସ୍ପର୍ଦ୍ଧା । ବହୁତ । ତା ଭଳି ବିରାଟ ପଶୁକୁ ଜାଣି ତ ନାହିଁ । ପୁଣି ଅଜ୍ଞତା ପାଇଁ ଲଜ୍ଜିତ ବି ନୁହେଁ । ସିଧା ଆସି ପରିଚୟ ଗୃହୁଁଛି । ଡର, ଭୟ, ଭ୍ରାନ୍ତି ତ ଦୂରର କଥା, ସାଧାରଣ ସଙ୍କୋଚ ମଧ୍ୟ ନାହିଁ ।

ପ୍ରଥମେ ପଶୁଟି ଭାବୁଥିଲା—ଉପେକ୍ଷା କରିବ, ଉତ୍ତର ଦେବ

ନାହିଁ । ପରେ ଭାବିଲା, ଉତ୍ତର ନଦେଲେ ମୂଷାଟି ବକର ବକର ହେବ । ଶ୍ରେଷ୍ଠଙ୍କୁ ପାଖରେ ବେଶୀ ସମୟ ରଖିବା ଅନୁଚିତ । ବିଦା କରିଦେବା ସବୁଠୁ ଭଲ । ତେଣୁ ଗମ୍ଭୀର ଭାବରେ କହିଲା; "କି ଅସମ୍ଭବ କଥା । ତୁ କପରି ମତେ ଜାଣିନାହୁଁ, ମୁଁ ହେଉଛି ଓଟ । ପଶୁମାନଙ୍କ ମଧ୍ୟରେ ପୁରାତନ । ପ୍ରଧାନ । ରାଜସ୍ଥାନ ମରୁଭୂମିରେ ରହେ ।" କଥାରେ ତାର ବିରକ୍ତ ପ୍ରସ୍ଫୁଟିତ ।

ମୂଷା କହିଲା, 'ମୁଁ ଏକ କ୍ଷୁଦ୍ର ଜୀବ । ମଣିଷ ମୋ ପ୍ରତି ନିର୍ଦ୍ଦୟ । ମୋ ବଂଶ ଧ୍ୱଂସ କରିବାକୁ ପ୍ରତିଜ୍ଞାବଦ୍ଧ । ଭୟରେ ଆମେ ବାହାରେ ବୁଲୁନ, ଗୋଟିଏ ଜାଗାରେ ରହୁ । ଅଧିକାଂଶ ସମୟ ଗର୍ଭର ଗାତରେ, ସେମିତି ରହିବା ଛଡ଼ା ଆଉ ଉପାୟ ନାହିଁ । ଆପଣଙ୍କର ପାଦ ଏ ଜଙ୍ଗଲରେ କେବେ ପଡ଼ିନାହିଁ । ତେଣୁ ମୁଁ ଆପଣଙ୍କୁ ଦେଖିବାର ସୁଯୋଗରୁ ବଞ୍ଚିତ । ସେଥିପାଇଁ ମୁଁ ଆପଣଙ୍କୁ ଜାଣି ନାହିଁ ମଧ୍ୟ । ଏହା ମୋର ଅଜ୍ଞତା । ଏକ ଅପରାଧ । ତ୍ରୁଟି ମୋର ମାର୍ଜନୀୟ । ଆପଣ ପ୍ରକୃତରେ ବିରାଟ । ପ୍ରଖ୍ୟାତ, ଚେହେରା ବି ଅଦ୍ଭୁତ । ଆପଣ ଦର୍ଶନ ପାଇଁ ମୁଁ ଭାଗ୍ୟବାନ । ଆପଣଙ୍କ ବନ୍ଧୁତ୍ୱ ପାଇଁ ମୁଁ ଆଗ୍ରହୀ । ଆପତ୍ତି ନ ଥିଲେ ମତେ ଗ୍ରହଣ କରନ୍ତୁ ।'

ମୂଷାଟି ପ୍ରତି ଓଟର ଶ୍ରଦ୍ଧା ନ ଥାଏ । ତା'ଛଡ଼ା ତାକୁ ସେ ତୁଚ୍ଛ ଆଖିରେ ଦେଖେ । ଖାତିର ବି କରେ ନାହିଁ । ମୂଷା କଥାକୁ ସେ ଫୁତ୍କାରରେ ଉଡ଼ାଇ ଦେଲା । ପୁଣି ପଣ୍ଡ୍ରଟେକ କଅଁଳିଆ ଲଟା ଖାଇବାରେ ବ୍ୟସ୍ତ ରହିଲା । ମୁଣ୍ଡ ଉଠାଇବା ଦେଖି ମୂଷାଟି ଭାବୁଥିଲା ଓଟ ବୋଧ ହୁଏ ତାକୁ କ'ଣ କହିବ । କିନ୍ତୁ ତା ଖାଇବା ଦେଖି ମୂଷାଟି କ୍ଷୁବ୍ଧ ହେଲା ।

ମୂଷାମାନେ ଭାରି ଜିଦ୍‌ଖୋର । ବିନା ଜିଦ୍‌ରେ ବିଦ୍ୟା

ହୁଏନାହିଁ । ବିଦ୍ୟାର ମାଲିକ ଗଣେଶ । ସେଥିପାଇଁ ମୂଷାମାନଙ୍କର ବାହନ ।

ଓଟର ବନ୍ଧୁ ହେବାକୁ ତାର ତ ମନ ଲାଗିଛି । ତେଣୁ ସେ ଓଟକୁ କହିଲା "ଆପଣ ମତେ ଜାଣି ନାହାନ୍ତି । ଭବିଷ୍ୟତରେ ମୁଁ ହୁଏତ ଦରକାରରେ ଆସିବି, ବିଭିନ୍ନ ପରିସ୍ଥିତିରେ । ବହୁ କ୍ଷେତ୍ରରେ ମୋର ସାହାଯ୍ୟ ଦରକାର ପଡ଼ିପାରେ । ମୋ କଥା ମାନନ୍ତୁ । ମତେ ବନ୍ଧୁ ହିସାବରେ ଗ୍ରହଣ କରନ୍ତୁ ।"

ଖାଇଲାବେଳେ ଅନ୍ୟ ଜଣକର ବକର ବକର ବିରକ୍ତି କର । ସବୁ ଜୀବଜନ୍ତୁଙ୍କ ପକ୍ଷେ ଏହା ସ୍ୱାଭାବିକ । ଓଟଟି ତାର ବ୍ୟତିକ୍ରମ ନୁହେଁ । ମୂଷାକୁ ବିଦା କରିବାକୁ ସେ ଚାହୁଁଥାଏ । ତେଣୁ କହିଲା, "ତୁ ଏକ କ୍ଷୁଦ୍ରଜୀବ । ମୁଁ ତୋ ତୁଳନାରେ ଖୁବ ବଡ଼ । ତୁ ମୋର ସମକକ୍ଷ ନୁହଁ । ତୁ ମୋତେ କି ସାହାଯ୍ୟ କରିପାରିବୁ ?" କଥାଟା ଶେଷ ନ କରି ପୁଣି ସବୁଜ ପତ୍ର ଖାଇବାରେ ସେ ମନୋନିବେଶ କଲା ।

ମୂଷା କହିଲା, "ମୁଁ କ୍ଷୁଦ୍ର ହୋଇପାରେ ସତ, କିନ୍ତୁ ନଗଣ୍ୟ ନୁହେଁ । ଆପଣ ବଡ଼ ମୁଁ ଶ୍ରେଷ୍ଠ । ସମାକକ୍ଷ ବି ନୁହେଁ । ଏସବୁ ସତ୍ୟ । କିନ୍ତୁ ଦେଖିବେ ଆପଣଙ୍କ ଦରକାରରେ ମୁଁ ଆସିବି"

"ହୁଁ"—ଓଟ ପୁଣି ଏକ ବେଖାତିର ଶବ୍ଦ କଲା, ତାଚ୍ଛଲ୍ୟର ପରି ପ୍ରକାଶ । ଶବ୍ଦଟି କରି ପୁଣି ସବୁଜ ପତ୍ର ଖାଇବାରେ ସେ ବ୍ୟସ୍ତ । ଖାଇବାରେ ତାର ଆଗ୍ରହ ପ୍ରବଳ, ବ୍ୟଗ୍ରତା ବି ଅନେକ ।

ଏଠୁ ସେଠୁ ବିକଳ ହୋଇ ଖାଉ ଖାଉ ତାର ନାକ ରସିଟି କେଉଁଠି ଗୁଡ଼େଇ ହୋଇଗଲା । ଯେତେ ଚେଷ୍ଟାକଲେ ମଧ୍ୟ ବାହାରିଲା ନାହିଁ । ଯେତିକି ସେ ତାର ମୁହଁକୁ ଟାଣିଲା ତାକୁ ସେତିକି

ବାଧିଲା । ସେ ବର୍ତ୍ତମାନ ଅସହାୟ, ନିରୁପାୟ । ଉପରକୁ ମୁହଁ ଟେକି ଦୀର୍ଘନିଶ୍ୱାସ ଛାଡ଼ିଲା ।

ମୂଷାଟି ଏସବୁ ଦେଖୁଥାଏ । ମନେ ମନେ ଭାବିଲା, ଓଟ ଏଥର ଫାନ୍ଦରେ ପଡ଼ିଛି । ଯିବ କୁଆଡ଼େ ? ମନର କଥା ମନରେ ତାର ଥାଏ । ସେ କହିଲା, "ଆପଣ ସନ୍ଦ କିଛି ନ ଭାବନ୍ତୁ, ତା' ହେଲେ ମୁଁ ଆପଣଙ୍କୁ ମୁକ୍ତ କରିବାକୁ ସାହାଯ୍ୟ କରିବ ।"

ସବୁ ଜୀବର ଆତ୍ମମର୍ଯ୍ୟାଦା ଅଛି । ଅଳ୍ପ ସମୟ ପୂର୍ବରୁ ଓଟଟି ମୂଷାକୁ ଭଲ ବ୍ୟବହାର କରିନାହିଁ । ତାର ବନ୍ଧୁ ହେବାକୁ ମଧ୍ୟ ମନା କରିଦେଇଛି ରୋକ ଠୋକ୍ ଭାବରେ । ଅଥଚ କେଉଁ ମୁହଁରେ ସେ ତାର ସାହାଯ୍ୟ ନେବ । ସେ ଭାବି ପାରିଲା ନାହିଁ । ତା'ଛଡ଼ା ସେ ଯେ ନିଜକୁ ରକ୍ଷା କରିବାରେ ଅସମର୍ଥ, ସେ କଥା ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ ।

ଓଟଟି ପୁଣି ମୁହଁକୁ ଟାଣିଲା । ମୁକ୍ତ ହେବାପାଇଁ ତାର ନୂତନ ଉଦ୍ୟମ । ଏ ଉଦ୍ୟମ ସହିତ ନିଜର ମାନ ମହତ୍ତ୍ୱ ବି ସମ୍ପୃକ୍ତ । ସେଥିପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କଲା । ମୁହଁକୁ ଖୁବ୍ ଟାଣିଲା । ଆଖିରେ ଲୁହ ଜମିଗଲା । ତଥାପି କିଛି ଫଳ ହେଲା ନାହିଁ । ସବୁ ଉଦ୍ୟମ ବ୍ୟର୍ଥ ହେଲା । ବିଫଳତା ହିଁ ଅନିବାର୍ଯ୍ୟ । ଶେଷକୁ ସେ ସ୍ଥିରହୋଇ ରହିଗଲା । ଖାଲି ମୂଷାଆଡ଼କୁ ଅନାଉଥାଏ । ଚାହାଣୀରେ ଥାଏ କାରୁଣ୍ୟ । ବିକଳ ଭାବ । ଅସହାୟତା । ସାହାଯ୍ୟ ପାଇଁ ଏକ କରୁଣ ନିବେଦନ ।

ମୂଷାଟି ଦରିଦ୍ର, ପ୍ରତିହିଂସା ପରାୟଣ ନୁହେଁ । ଓଟର ଦୁଃଖରେ ସେ ଦୁଃଖୀ । ସେ ଆଉ ଅପେକ୍ଷା କଲାନାହିଁ । ଗଛ ଉପରକୁ ଉଠିଗଲା । ତାର ଦାନ୍ତ ତୀକ୍ଷ୍ଣ । ସେଥିରେ ଗୁଡ଼ାଇ

ହୋଇଥିବ ଲଟାକୁ ସେ ଠିକ୍ ଠିକ୍ କରି କାଟି ପକାଇଲା । ଓଟଟି ଏଥର ମୁକ୍ତ ।

ଓଟ ପ୍ରକୃତରେ ଅଦ୍ଭୁତ । ପୂର୍ବ କଷ୍ଟପାଇଁ ଶୋଚନା ନାହିଁ । ପୁଣି ସେ ଖାଇବାରେ ବ୍ୟସ୍ତ । କୃତଜ୍ଞତା ପ୍ରକାଶ ତ ଦୂରର କଥା । ମୂଷାକୁ ଟିକିଏ ଅନାଇଲା ବି ନାହିଁ । ମୂଷା ଏଥର ରାଗିଗଲା । ଭାବିଲା ଏଇଟା କୃତଘ୍ନ । ସୁବିଧାର ପିଆରୀ ।

ସାହାଯ୍ୟକାରୀର କର୍ତ୍ତୃତ୍ୱ ଆସିଯାଏ, ସଙ୍କୋଚ ରହେନାହିଁ । ଭାଷା ତାର ଭିନ୍ନ । ମୂଷାଟିର ବର୍ତ୍ତମାନ ସେଇ ଅବସ୍ଥା । କଥାରେ ତାର ଆଉ ନମ୍ରତା ନାହିଁ । ମନରେ ତାର ରାଗ ବହୁତ । ଭାଷା ତେଣୁ ତାର ରୁକ୍ଷ । ସେ କହିଲା, "ହେ ଲମ୍ବାବେକା, ଏଥର କଅଁଳିଆ ପତ୍ର ଖାଉଥା, ମୁଁ ଯାଉଛି । ବିପଦ ପଡ଼ିଲେ ମତେ ଖୋଜିବୁ, ମୁଁ ଆସି ସାହାଯ୍ୟ କରିବି ।"

ଓଟଟି ବେଶ୍ ଉଚ୍ଚ, ଦେହରେ ପ୍ରଭୂତ ବଳ । ମୂଷାଟି କ୍ଷୁଦ୍ରଜୀବ । ମୂଷାଟି ସାହାକଲା ସେଇଟା ତାର କର୍ତ୍ତବ୍ୟ ବୋଲି ଓଟ ଧରିନେଲା । ତେଣୁ ମୂଷା କଥାକୁ ସେ ଟିକିଏ ବି ଖାତିର କଲା ନାହିଁ । ବରଂ ହେୟଜ୍ଞାନ କରି ଗୁରୁତ୍ୱ ଦେଲା ନାହିଁ । ଶୁଣି ନ ଶୁଣିଲା ଭଳି ରହିଲା । ସେଠୁ ଯାଇ ଆଉ ଗୋଟିଏ ବୁଦାରୁ ସବୁଜ ପତ୍ର ଖାଇବାକୁ ଲାଗିଲା ।

ସେଦିନ ସେଇ ବାଟଦେଇ ସେ ଦେଶର ରାଜା ଯାଉଥିଲେ । ଅନ୍ୟ ଦେଶକୁ ଆକ୍ରମଣ କରିବାକୁ । ସାଥିରେ ଅଗଣିତ ସୈନ୍ୟ । ସୁସଜ୍ଜିତ । ପଛରେ ଅନେକ ଭାରବାହୀ ପଶୁ । ତେବେ ବି ଆହୁରି ଦରକାର । ଓଟଟି ଆନନ୍ଦରେ ପତ୍ର ଖାଉଥାଏ । ରଖୁଆଳି କେହି ନାହିଁ । ଏକଥା ରାଜାଙ୍କ ଆଖିରେ ପଡ଼ିଗଲା । ସେ ଅଟକି ଗଲେ ।

ଜଙ୍ଗଲର ସବୁ ଜିନିଷରେ ରାଜାଙ୍କର ଅଧିକାର ଅଛି । ଏଇଆ ହୋଇଛି ନିୟମ । ଓଟଟି ଜଙ୍ଗଲରେ ଅଛି । ପାଖରେ ତାର ମାଲିକ କେହି ନାହିଁ । ତେଣୁ ତାହା ରାଜାଙ୍କର । ତା'ଛଡ଼ା ଓଟ ଘର-ବାହ୍ମି ପଶୁ । କାମ ନକରି ବୁଲିବ, ଏକଥା ରାଜା ବରଦାସ୍ତ କରି ପାରିଲେ ନାହିଁ । ବିଶେଷତଃ ଯୁଦ୍ଧ ସମୟରେ । ତେଣୁ ହୁକୁମ-ଦେଲେ "ଓଟକୁ ଶିବିରକୁ ନେଇଯାଅ ।"

ପାଟିରୁ କଥା ସରିନାହିଁ । ସୈନ୍ୟମାନେ ଧାଇଁଲେ । ସେମାନଙ୍କୁ ଦେଖି ଓଟ ଭୟଭୀତ । ବିନମ୍ର ହୋଇ କହିଲା, "ମୂଷା ମୋର ମାଲିକ । ତାର ବିନାନୁମତିରେ ମୁଁ ଯାଇପାରିବି ନାହିଁ ।"

ସୈନ୍ୟମାନେ ଫେରିଆସି ଏକଥା ରାଜାଙ୍କୁ ଜଣାଇଲେ । ରାଜା ବିସ୍ମିତ । ଏଡ଼େ ଛୋଟ ମୂଷା, ଏତେବଡ଼ ଓଟର ମାଲିକ । ଏହା ହେବା ଅସମ୍ଭବ । ବିଶ୍ୱାସ ଯୋଗ୍ୟ ମଧ୍ୟ ନୁହେଁ । ତଥାପି ତାଙ୍କର କୌତୁହଳ ହେଲା । ଓଟ ପାଖକୁ ନିଜେ ବିଜେକଲେ ।

ମୂଷା ତାର ମାଲିକ । ତାକୁ ନବାକୁହେଲେ ମୂଷାର ଅନୁମତି ଲୋଡ଼ା । ଏକଥା ଓଟ ରାଜାଙ୍କୁ ବି ଜଣାଇଦେଲା ।

ରାଜା ଓଟ କଥା ଶୁଣି ହସିଲେ । କହିଲେ, "ତୁ ତ ଏଡ଼େ ବିରାଟ ଜନ୍ତୁ, ମୂଷା ଗୋଟିଏ କ୍ଷୁଦ୍ରଜୀବ । ତୋର ସେ କେବେ ମାଲିକ ହୋଇ ନପାରେ । ଏ ତୋର ଏକ ଫିସାଦ ।" ତାପରେ ସୈନ୍ୟମାନଙ୍କୁ ଲକ୍ଷକରିକହିଲେ, "ଓଟ ନାକର ମୁହଁଆକୁ ଧରି ଏଠୁ ଶିବିରକୁ ନେଇଯାଅ । ତା' ଉପରେ ଜିନିଷ ଲଦି ଯୁଦ୍ଧକ୍ଷେତ୍ରକୁ ପଠାଇ ଦିଅ ।"

ମୂଷାଟି ଗାତରୁ ମୁହଁ କାଢ଼ି ସବୁ ଶୁଣୁଥିଲା । ରାଜାଙ୍କ ଆଦେଶ ଶୁଣି କହିଲା, "ମହାରାଜ ! ଓଟଟି ମୋର । ଆପଣ ରାଜା । ପ୍ରଜାର ରକ୍ଷକ । ପ୍ରଜାର ସମ୍ପତ୍ତି ରକ୍ଷାକରିବା ଆପଣଙ୍କର ଧର୍ମ ।

ଆପଣ ମୋ ଓଟକୁ ନିଅନ୍ତୁ ନାହିଁ । ନେଲେ ଲୋକେ ଆପଣଙ୍କୁ ଲୁଣ୍ଠକ ବୋଲି କହିବେ, ବିଦ୍ରୋହ କରିବେ । ଦୟାକରି ତା ଦେହରେ ହାତ ଦିଅନ୍ତୁ ନାହିଁ ।"

କ୍ଷମତାଶାଳୀ ଲୋକ ମାତ୍ରେ ହିଁ ଗର୍ବୀ । ଉପଦେଶ ଶୁଣିବାକୁ ପରାଙ୍ମୁଖ । ରାଜାତ ସମସ୍ତଙ୍କ ଉପରେ । ତା'ଛଡ଼ା ମୃଷା ପୁଣି ଏକ କ୍ଷୁଦ୍ରଜୀବ । ତାର ପୁଣି ରାଜାଦେଶକୁ ପ୍ରତିରୋଧ । ଅତି ଅସହ୍ୟ । ରାଜା କ୍ଷୁବ୍ଧ ହୋଇ ସେଠୁ ଫେରିଆସିଲେ । କିଛି ଉତ୍ତର ଦେଲେ ନାହିଁ ।

ସୈନ୍ୟମାନେ ଜାଣନ୍ତି । ରାଜାଦେଶ ପ୍ରତ୍ୟାହାର ନ ହେଲେ; ପାଳନୀୟ । ବ୍ୟତିକ୍ରମ ହେଲେ ଦଣ୍ଡ ଅନିବାର୍ଯ୍ୟ । ସେମାନଙ୍କର କିଛି କରିବାର ନଥିଲା । ଓଟର ନାକ ମୁହଁଆ ରସିକୁ ଟାଣି ଟାଣି ସେମାନେ ତାକୁ ନେଇଆସିଲେ ।

ମୂଷା ସବୁ ଦେଖୁଥାଏ । ଭାବିଲା—ଓଟ ତ ଭାରବାହୀ ପଶୁ । ରାଜା ତାକୁ ଏଇନେ ଧରିନେଲେ । ଜନିଷ ନଦ ଯୁଦ୍ଧ କ୍ଷେତ୍ରକୁ ପଠାଇଦେବେ । ସେଇଟା ତ ବୋକା, ପେଟବିକଳୀ । କିଛି ଜାଣି ପାରିବନାହିଁ । ଆତ୍ମରକ୍ଷା ତା'ପକ୍ଷେ ଅସମ୍ଭବ । ମୃତ୍ୟୁ ତାର ସୁନିଶ୍ଚିତ । ପଶୁଟି ଅବଶ୍ୟ ତାକୁ ଅବଜ୍ଞା କରିଥିଲା, ହେଲେ— ବର୍ତ୍ତମାନ ତାର ସରଣାପନ୍ନ । ତାକୁ ରକ୍ଷା କରିବା ତାର ଏକାନ୍ତ କର୍ତ୍ତବ୍ୟ । ତା'ଛଡ଼ା ଓଟ ତାକୁ ରାଜାଙ୍କ ସମ୍ମୁଖରେ ମାଲିକ ବୋଲି ସ୍ୱୀକାର କରିଛି । ରାଜା ତାକୁ ନେଇଯିବାଟା ଉଚିତ ହୋଇ ନାହିଁ । ଏହା ପରଦ୍ରବ୍ୟ ଲୁଣ୍ଠନ ବ୍ୟତୀତ ଅନ୍ୟ କିଛି ନୁହଁ । ଉଚ୍ଚ ପଦବୀର ଏହା ଅସଦ୍ ବ୍ୟବହାର ।

ପରଧନର ସୁରକ୍ଷା ରାଜାର ଧର୍ମ । ଏ ରାଜା ବିଧର୍ମୀ । ବେଳହୁଁ ପ୍ରତିକାର ନ କଲେ ସେ ସ୍ୱେଚ୍ଛାଚାରୀ ହୋଇ ଉଠିବ ।

ଅତ୍ୟାଚାର କରିବ । ଲୋକଙ୍କର ବିପତ୍ତି ବଢ଼ିବ । ଆଗରୁ ସାବ-ଧାନ ହେବାକୁ ପଡ଼ିବ । ରାଜାଙ୍କୁ ପାନେ ଦେଲେ ଆଉ ଅତ୍ୟାଚାର କରିବାକୁ ତାର ସାହାସ ହେବନାହିଁ ।

ମୂଷା ଗୋଷ୍ଠିଆ ଜୀବ । ସେମାନଙ୍କୁ ବଞ୍ଚି ରହିବାକୁ ହେବ । ସେଥିପାଇଁ ସେମାନେ ଦଳବଦ୍ଧ । ଜଣଙ୍କର ବିପତ୍ତିକୁ ସେମାନେ ସାମୂହିକ କରି ଦିଅନ୍ତି । ସେମାନେ ସେଥିପାଇଁ ପ୍ରାଣଘାତ କରିବାକୁ ପ୍ରସ୍ତୁତ । ବିପଦ ପଡ଼ିଲେ ସେମାନେ ଏକ ନିର୍ଦ୍ଦିଷ୍ଟ ଶବ୍ଦ କରନ୍ତି । ଅନ୍ୟ ମୂଷା ତାହା ଶୁଣିଲା ମାତ୍ରେ ଧାଏଁ । ବିପଦ ଗ୍ରସ୍ତ ପାଖରେ ପହଞ୍ଚେ । ମୂଷାଟି ଭାବିଲା—ରାଜାଙ୍କର କାର୍ଯ୍ୟ ତା'ପ୍ରତି ଏକ ବିପଦ । ସେଥିରୁ ଉଦ୍ଧାର ପାଇବା ପାଇଁ ଅନ୍ୟ ମୂଷାଙ୍କର ସାହାଯ୍ୟ ତାର ଲୋଡ଼ା ।

ମୂଷାଟି ଇସାରା ଦେଲା । ମାତ୍ର ମୁହୂର୍ତ୍ତଟିଏ । ଗୃହୁଁ ଗୃହୁଁ ଅସଂଖ୍ୟ ମୂଷାଙ୍କର ସମାବେଶ । ପ୍ରତ୍ୟେକଙ୍କର ଗୋଟିଏ ପ୍ରଶ୍ନ, "କ'ଣ ହେଲା ?"

ମୂଷାଟି ସମବେତ ମୂଷାମଣ୍ଡଳୀଙ୍କୁ କହିଲା, "ଭାଇମାନେ ତୁମ୍ଭେମାନେ ଜାଣ, ରାଜା ମାତ୍ରେ ହିଁ ଧାର୍ମିକ । ସମସ୍ତ ସମ୍ପତ୍ତିର ମାଲିକ । ସେ ପ୍ରଜାଙ୍କ ସମ୍ପତ୍ତିର ରକ୍ଷାକର୍ତ୍ତା । ପରଧନ ଲୁଣ୍ଠନ ତାଙ୍କ ପକ୍ଷେ ଅସମ୍ଭବ । ପ୍ରଜାଙ୍କର ମଙ୍ଗଳ ତାଙ୍କର କାମ୍ୟ । କିନ୍ତୁ ଏ ଦେଶର ରାଜା ଭିନ୍ନ । ସେ ଅତ୍ୟାଚାରୀ । ସବୁବେଳେ ପଡ଼ୋଶୀ ରାଜ୍ୟସହ ଯୁଦ୍ଧରେ ଲିପ୍ତ । ପ୍ରଜାଙ୍କର କଥା ବୁଝେନାହିଁ । ଯୁଦ୍ଧରେ ଅଜସ୍ର ଅର୍ଥବ୍ୟୟ ଓ ଜନକ୍ଷୟ କରେ । ରାଜକୋଷ ଆଜି ଶୂନ୍ୟ । ସେ ନିର୍ଦ୍ଦୟ । ପ୍ରଜାକୁଳ ଆଜି ଅତିଷ୍ଠ । ତୁମେ ବିଶ୍ୱାସ କର ବା ନକର ଭାତ ହାଣ୍ଡିରୁ ଭାତଟିଏ ଚିପାଯାଏ । ଗୋଟିଏ କଥାରୁ ମଣିଷର ପ୍ରକୃତି ଜଣାଯାଏ ।

ମୁଁ ଗୋଟିଏ ସାମାନ୍ୟ ଉଦାହରଣ ଦେଉଛି, ମନଦେଇ ଶୁଣ । ଏ ଜଙ୍ଗଲକୁ ଏକ ଅଦ୍ଭୁତ ଜୀବ ଆସିଲା । ବେକଟି ତାର ଲମ୍ବା । ଅପୂର୍ବ ଚେହେରା । ବୋକାଟାଏ । ପେଟ ବକଲା । ଆଗପଛ ଭାବି ପାରେନାହିଁ । ତା ନାଁ ଓଟ । ସେ ମୋତେ ତାର ମାଲିକ ବୋଲି ସ୍ୱୀକାର କରିଛି । ରଜା ତାକୁ ନେବାକୁ ଚାହିଁଲେ । ମୋତେ ପଚାରିଲେ ନାହିଁ । ତଥାପି ମୁଁ ପ୍ରତିବାଦ କଲି । ରାଜା ମାନିଲେ ନାହିଁ । ତାକୁ ନେଇଗଲେ । ସେ ତ ଭାରବାହୀ ପଶୁ । ତା ପିଠିରେ ଭାରନଦୀ ଯୁଦ୍ଧକୁ ପଠାଇଦେବେ । ସେଠି ତାର ମୃତ୍ୟୁ ଅନିବାର୍ଯ୍ୟ । ଆମେ ସାହାଯ୍ୟ ନ କଲେ ତାର ରକ୍ଷା ନାହିଁ ।

ରାଜା ତାକୁ ଭାର ବୁହାଇଲେଣି । ସେ ତାର ପ୍ରତିବାଦ କରିନାହିଁ । ଏହା ସତ୍ୟ । କିନ୍ତୁ ମୁଁ ତାର ମାଲିକ । ମୋର ଅନୁମତି ନିଆଗଲା ନାହିଁ । ମୁଁ ଲାଞ୍ଛିତ, ଅପମାନିତ । ଆପଣମାନେ ମୋର ବନ୍ଧୁ । ମୋର ଇଜ୍ଜତ ରଖିବା ଆପଣଙ୍କର କର୍ତ୍ତବ୍ୟ । ତା'ଛଡ଼ା ଗୋଟିଏ ପ୍ରାଣୀର ଜୀବନ ବି ରକ୍ଷା ହେବ ।"

ମାଙ୍କୁଡ଼ମାନେ ଭାବିଲେ । ମାଙ୍କୁଡ଼ଟି ଯାହା କହୁଛି, ତା ସତ୍ୟ । ଶରଣାପନ୍ନ ଜୀବଟିକୁ ରକ୍ଷା ନ କଲେ ସେମାନେ ଧର୍ମଦ୍ରୋହୀ ହେବେ । ତାଙ୍କ ଜାତିରେ କଳଙ୍କ ଲାଗିବ । ତା'ଛଡ଼ା ରାଜା ପ୍ରଜାର ଧନ ଲୁଣ୍ଠନ କରିବା ଅନୁଚିତ । ତାହା ଅଧର୍ମ । ଧର୍ମରେ ସଂସାର ଚାଲେ । ଧର୍ମ ରକ୍ଷାକରିବାକୁ ହେବ । ନଚେତ ସଂସାର ଉଚ୍ଛନ୍ନ ହୋଇଯିବ ।

ଓଟକୁ ସାହାଯ୍ୟ କରିବା ପାଇଁ ସ୍ଥିରହେଲା । କଥା ହେଲା, ରାଜା ତ ବହୁତ ପଶୁଙ୍କୁ ଯୁଦ୍ଧରେ ଖଟାଇବା ପାଇଁ ରଖିଛନ୍ତି । ସେମାନେ ରାତିରେ ବନ୍ଧାହୋଇ ରହନ୍ତି । ସେମାନଙ୍କ ଦଉଡ଼ିକୁ ରାତିରେ

କାଟିଦେଲେ ସବୁ ପଶୁ ମୁକ୍ତ ହୋଇଯିବେ । ସକାଳକୁ ରାଜାଙ୍କର ପଶୁ କେହି ନଥିବେ । ରାଜା ଅଚଳ ହୋଇଯିବେ ।

ରାତ୍ରି ଅଧରେ ଧାଡ଼ିବାନ୍ଧି ଚାଲିଲେ ଅଗଣିତ ମୂଷା । ସେତେବେଳକୁ ସୈନ୍ୟମାନେ ନିଦ୍ରାଭିଭୂତ । କେବଳ ପ୍ରହରୀମାନେ ଜାଗ୍ରତ । ସବୁ ପଶୁ ମଧ୍ୟ ସୁପ୍ତ । ପଶୁମାନେ ବନ୍ଧା ହୋଇଥିବା ଦଉଡ଼ିକୁ ମୂଷାମାନେ ଯାଇ ଟିକ୍ ଟିକ୍ କରି କାଟିଦେଲେ । ସେ ଦଉଡ଼ି ଯେପରି କୌଣସି କାମରେ ଲାଗିବ ନାହିଁ । ସବୁ ପଶୁଙ୍କର ନିଦ ଭାଙ୍ଗିଗଲା । ଗୋଟିକପରେ ଗୋଟିଏ ପଶୁ ଉଠି ଯେ ଯୁଆଡ଼େ ଚାହିଁଲେ ପଳେଇଲେ ।

ସକାଳେ ଦେଖାଗଲା—ପଶୁମାନେ ନାହାନ୍ତି । ହଠାତ୍ ଏକଥା କେମିତି ହେଲା କେହି ଜାଣିବ ପାରିଲେ ନାହିଁ । ଏ ଖବର ଚାରିଆଡ଼େ ବ୍ୟାପିଗଲା, ଜଙ୍ଗଲର ନିଆଁ ପରି । ମୂଷାମାନଙ୍କର ଏ କାର୍ଯ୍ୟ ବୋଲି ପରେ ଜଣାପଡ଼ିଲା ।

ରାଜା ଓ ସେନାପତିମାନେ ବସି ପଶୁମାନଙ୍କୁ ସଂଗ୍ରହ କରିବାକୁ ସ୍ଥିରକଲେ । ସୈନ୍ୟମାନଙ୍କୁ ଜଙ୍ଗଲକୁ ପଠାଇଲେ । ଏ ଖବର ପଡ଼ୋଶୀ ରାଜାଙ୍କ ନିକଟରେ ପହଞ୍ଚିଲା । ସେ ମଉକାର ସୁଯୋଗ ନେଲେ । ହଠାତ୍ ଏହି ରାଜ୍ୟ ଆକ୍ରମଣ କଲେ ।

ରାଜାଙ୍କର ପଦାତିକ ସୈନ୍ୟଛଡ଼ା ଆଉ ସମସ୍ତ ବାହିନୀ ଅକର୍ମଣ୍ୟ । ପଦାତିକ ସୈନ୍ୟ ଭିତରୁ ଅନେକ ହାତୀ, ଘୋଡ଼ା, ଓଟକୁ ଖୋଜିବାକୁ ବାହାରି ଯାଇଥାନ୍ତି । ଅବଶିଷ୍ଟ ସୈନ୍ୟମାନେ ପ୍ରାଣମୂର୍ଚ୍ଛା । ସଂଗ୍ରାମ କଲେ । ଶେଷକୁ ହାରିଗଲେ । ରାଜା ପ୍ରାଣବିକଳରେ ପଳାଇଗଲେ ।

ଓଟ ମୂଷାର ଗାତ ପାଖକୁ ଫେରିଆସିଲା । ସେ ଏବେ ମୁକ୍ତ । ମୂଷାଟିକୁ ଦେଖି କୃତଜ୍ଞତା ଜଣାଇ କହିଲା, "ଯାହା ବରାଟ

ତାହା ବଡ଼ନୁହେଁ । ଯାହା କ୍ଷୁଦ୍ର ତାହା ହେୟ ନୁହେଁ । ମୁଁ ଆପଣଙ୍କୁ ବନ୍ଧୁ ହିସାବରେ ଗ୍ରହଣ କରୁଛି । ମୋର ତ୍ରୁଟିପାଇଁ ମତେ କ୍ଷମା ଦିଅନ୍ତୁ । ଆପଣ ଚାହିଁଲେ, ମୋର ହୋଦାରେ ଲୁଚି ରହିପାରନ୍ତି । ଦରକାରବେଳେ ମତେ ବି ସାହାଯ୍ୟ କରିପାରିବେ ।"



## ଧାର୍ମିକ ରାଜୁ

ଜାଣିନାହିଁ କେତେଦିନର କଥା । ଗୋଟିଏ ଗାଁରେ ବ୍ୟବସାୟୀଟିଏ ଥିଲା । ନାଁ ତାର ରାଜୁ । ସେ ଖୁବ୍ ଧାର୍ମିକ । ତାର ଦୋକାନ ଅଛି । କାରବାର ବି ଅଛି । ଟଙ୍କା ପଇସା କରଜ ମଧ୍ୟ ଦିଏ । କିନ୍ତୁ ସେ କାହାରିକୁ ଠକେ ନାହିଁ । କାହାଠାରୁ ପଇସାଟିଏ ବି ଅଧିକା ନିଏ ନାହିଁ । ଲୋକଟି ହୃଦୟବାନ । ବିପଦ ଆପଦରେ ଲୋକଙ୍କୁ ସାହାଯ୍ୟ କରିବାରେ ତାର ଖ୍ୟାତି ଅଛି ।

ଧନୀ ସୌଦାଗରଟିଏ ସେଇ ଗାଁରେ ରହେ । ଥରେ ସେ ବିଦେଶ ଯାଇଥାଏ । ଘରେ ତାର ସ୍ତ୍ରୀ ଓ ପିଲାମାନେ ଥାଆନ୍ତି । ସ୍ତ୍ରୀ ତାର ଘରଦ୍ୱାର କଥା ବୁଝେ ଓ ପିଲାମାନଙ୍କୁ ଦେଖେ । ଥରେ ତାର ଅଭାବ ପଡ଼ିଲା । ସେ ରାଜୁର ଦ୍ୱାରସ୍ଥ ହେଲା । ତାରି ଅଭାବ କଥା ଶୁଣି ରାଜୁ ତାକୁ ଦୁଇଟି ସୁନା ମୋହରଦେଲା । ସୌଦାଗର ଆସିଲା ମାତ୍ରେ ସ୍ତ୍ରୀ ତାର ଫେରେଇ ଦେବବୋଲି କହି ଆସିଲା ।

ଦିନ କେତୋଟିପରେ ସୌଦାଗର ଆସିଲା । ସେଥିରେ ସେ ଆଣିଥାଏ, ସୁନା ମୋହର । ବହୁଦିନ ଯାତ୍ରାଯୋଗୁ ସେ ହାଲିଆ । କ୍ଳାନ୍ତ, ଘରେ ପହଞ୍ଚି, ସୁନା ମୋହର ବ୍ୟାଗଟି ଘରେ ରଖି ଖାଇ-ପିଇ ଶୋଇଗଲା ।

ପରଦିନ ବଡ଼ଭୋରରୁ ସ୍ତ୍ରୀ ତାର ଉଠିଲା । ସୌଦାଗର ଆସିବା ମାତ୍ରେ ସୁନା ମୋହର ଫେରାଇ ଦେବାପାଇଁ ସେତ ରାଜୁ

ସାଙ୍ଗରେ ଜବାବ କରିଥିଲା । ତେଣୁ ସେ ବ୍ୟସ୍ତବ୍ୟସ୍ତ । ବ୍ୟାଗଟି ଖୋଲି ଦୁଇଟି ସୁନା ମୋହର ବାହାର କଲା । ବ୍ୟାଗଟିକୁ ପୁଣି ଭଲକରି ବାନ୍ଧି ଥୋଇଦେଲା । ତା'ପରେ ମୋହର ଦୁଇଟିକୁ ଧରି ରାଜୁ ଦୋକାକୁ ଧାଇଁଲା ।

ରାଜୁର ଦୋକାନଟି ଖୋଲା । କିନ୍ତୁ ଆଖ ପାଖରେ କେଉଁଠି ହେଲେ ସେ ନଥିଲା । କୌଣସି ଲୋକ ବି ସେଠି ନଥିଲେ । ସ୍ୱାମୀ ଆସିଛନ୍ତି ବହୁଦିନ ପରେ । ଘରର କାମ ବି ବହୁତ । ତେଣୁ ତାର ଆଉ ଅପେକ୍ଷା କରିବାକୁ ବେଳ ନଥାଏ । ସ୍ତ୍ରୀ ଲୋକଟି ରାଜୁ ବସୁଥିବା ଆସନ ତଳେ ସୁନା ମୋହର ଦୁଇଟି ରଖିଦେଇ ଚାଲି-ଆସିଲା ।

ସୌଦାଗର ବିଛଣା ଛାଡ଼ି ନିତ୍ୟକର୍ମ ସାରିଲା । ତା'ପରେ ସୁନା ମୋହର ବିକିବାକୁ ବଜାରକୁ ବାହାରିଲା । ବ୍ୟବସାୟରେ ସାଧୁତା ପାଇଁ ରାଜୁ ପ୍ରସିଦ୍ଧ । ତେଣୁ ସେ ପ୍ରଥମେ ତାରି ପାଖକୁ ଗଲା । ସେଇଠି ସୁନା ମୁଦ୍ରାତକ ଦେଖେଇ ଦରଦାମ କଲା । ଦର ପଟିଲା ନାହିଁ । ସୌଦାଗର ଫେରିବା ପାଇଁ ଉଠିଲା । ସେଠି ତ ସୁନା ମୋହର ବ୍ୟାଗ ଖୋଲିଥିଲା । ତେଣୁ ମୋହରଗୁଡ଼ିକ ଗଣିଲା । ତାର ଦୁଇଟି ମୋହର କମ୍ ହେଲା । ସେ ବ୍ୟବସାୟୀ ରାଜୁକୁ ଦେବାପାଇଁ ଦାୟୀ କଲା ।

ରାଜୁ ମୋହର କଥା କିଛି ଜାଣେ ନାହିଁ ବୋଲି କହିଲା । ବାଦ ପ୍ରତିବାଦରେ ଗଣ୍ଡଗୋଳର ସୃଷ୍ଟି ହେଲା । ଦୋକାନ ଆଗରେ ଲୋକାରଣ୍ୟ । ହଠାତ୍ ଦୋକାନୀ ଆସନର କଣଟି ପବନରେ ଉଠିଗଲା । ସୌଦାଗର ସେଠି ଦୁଇଟି ମୋହର ଥିବା ଦେଖିଦେଲା । ତା'ପରେ ଚାଲିଲା ସୌଦାଗରର ପାଟି । କହିଲା—"ଦେଖ, କେତେ ସାଧୁପଣିଆ ଦେଖାଉଛି । ପ୍ରକୃତରେ ଇଏ ଗୋଟେ ଠକ, ସବୁ ଖାଲି ଭଣ୍ଡାମି ।"

ସୌଦାଗର କଥାକୁ ଅନେକ ଲୋକ ସମର୍ଥନ କଲେ । ରାଜୁ ବୋକା ପାଲଟି ଗଲା । କିନ୍ତୁ କୈଫିୟତ ଦେଇପାରିଲା ନାହିଁ । ସୌଦାଗର ମନମୁତାବକ ଗାଳି ଗୁଲଜ କରି ଘରକୁ ଫେରିଲା ।

ଘରେ ପହଞ୍ଚି ସ୍ତ୍ରୀକୁ ସବୁକଥା କହିଲା । ସ୍ତ୍ରୀଟି ମ୍ରିୟମାଣ ହୋଇ କାନ୍ଦ ପକାଇଲା । କହିଲା—"ଅଯଥାରେ ସାଧୁ ଲୋକକୁ ଦୋଷ ଦେଲ । ମୁଁ ଅସମୟରେ ତାଙ୍କଠାରୁ ଦୁଇଟି ମୋହର ଧାର ଆଣିଥିଲି । ତମେ ଆସିଲା ମାତ୍ରେ ଦେଇଦେବି ବୋଲି ଜବାବ କରିଥିଲି । ସକାଳେ ତମ ବ୍ୟାଗରୁ ଦୁଇଟି ମୋହର ତାଙ୍କୁ ଦେବା ପାଇଁ ନେଲି । ଦୋକାନକୁ ଯାଇ ଦେଖେ, ଦୋକାନ ଖୋଲା । କିନ୍ତୁ ସେ ନଥିଲେ । ତରବରରେ ତାଙ୍କ ଆସନତଳେ ରଖି ଚାଲି ଆସିଲି । ବେଳହେଲେ ଯାଇ କହିବି ବୋଲି ଭାବିଥିଲି । ତମେ ବି ଘରେ ଅଛ । ତେଣୁ ଫୁରୁସତ ହେଲା ନାହିଁ । ସେଥିପାଇଁ ଯାଇପାରିଲି ନାହିଁ ।

ସୌଦାଗରଟି ହତବାକ୍ । ଅଯଥାରେ ପରୋପକାରୀ ଓ ସାଧୁ ଲୋକକୁ ଦୋଷଦେଇ ସେ ଭୁଲ୍ କଲା । ସେଥିପାଇଁ ସେ ଲଜ୍ଜିତ । ସ୍ୱାମୀ, ସ୍ତ୍ରୀ ଉଭୟେ ଧାଇଁଲେ ବ୍ୟବସାୟୀର ଦୋକାନକୁ । ସେଠି ତଳକୁ ମୁଣ୍ଡ ପୋତି ବ୍ୟବସାୟୀଟି ବସିଥାଏ । ନିର୍ବିକାର ଭାବରେ ସ୍ୱାମୀ ସ୍ତ୍ରୀ ଯୋଡ଼ ହସ୍ତରେ ତାଙ୍କର ଦୋଷ ସ୍ୱୀକାର କଲେ ।

ଏ ଦୃଶ୍ୟ ଦେଖିବାକୁ ବି ଲୋକଙ୍କର ଭିଡ଼ । ସବୁ ଶୁଣିସାରି ଲୋକେ ପୁଣି ବ୍ୟବସାୟୀକୁ ପ୍ରଶଂସା ଓ ସୌଦାଗରକୁ ନିନ୍ଦାକଲେ ।

ବ୍ୟବସାୟୀ ଘର ଭିତରକୁ ପଶିଗଲା । ଫେରିଲା—ଦୁଇ ହାତରେ ଦୁଇମୁଠା ପାଉଁଶ ଧରି । ଦୋକାନ ଉପରେ ଠିଆହେଲା । ଡାହାଣ ମୁଠା ପାଉଁଶ ଡାହାଣ ପଟକୁ ଓ ବାଁ ମୁଠା ପାଉଁଶ ବାଁ ପଟକୁ ଫୋପାଡ଼ିଦେଲା । ସ୍ତ୍ରୀ ତାର ପଛରେ ଠିଆ ହୋଇଥାଏ ।

ସ୍ୱାମୀର ଏପ୍ରକାର ଢ଼ଙ୍ଗ ଦେଖି ପଚାରିଲା—"ଏ କ'ଣ କଲ ? କିଛି ବୁଝିପାରିଲି ନାହିଁ ।"

ସ୍ୱାମୀଟି କହିଲା—"ଆଲୋ ! ବୁଝିପାରିଲୁ ନାହିଁ । ଏବେ ଶୁଣ । ଯେଉଁମାନେ ନ ବୁଝି ନସୁଝି ପ୍ରଶଂସା କରନ୍ତି ତାଙ୍କ ମୁହଁରେ ଏ ବାଁ ପଟ ପାଉଁଶ ପଡୁ । ଯେଉଁମାନେ ନ ବୁଝି ନସୁଝି ପରନିନ୍ଦା କରନ୍ତି, ତାଙ୍କ ମୁହଁରେ ଏ ଡାହାଣପଟ ପାଉଁଶ ପଡୁ ।"

—❋—

## କଳହକୁଣ୍ଡୀ ସ୍ତ୍ରୀ

**ଗୁରୁ** ଗୋରଖ ନାଥ·········

ପଞ୍ଜାବର ପ୍ରସିଦ୍ଧ ସନ୍ଥ । ଜ୍ଞାନ ଆଉ ଉଦାରତା ପାଇଁ ଭାରତ ପ୍ରସିଦ୍ଧ । ତାଙ୍କର ସାନ୍ନିଧ୍ୟ ଦୁର୍ଲ୍ଲଭ । ତାଙ୍କର ସାନ୍ନିଧ୍ୟ ଦର୍ଶନ ପାଇଁ ଲୋକେ ଯାଆନ୍ତି । କାହିଁ ଦୂର ଦୂରାନ୍ତର ଲୋକ ଆସନ୍ତି । ଭାବନ୍ତି ତାଙ୍କ ସାନ୍ନିଧ୍ୟ ଈଶ୍ୱରଙ୍କ ଆଶୀର୍ବାଦ ।

ବହୁତ ଦୂରରୁ ଜଣେ ଲୋକ ଦିନେ ଆସିଥାଏ । ଗୁରୁଙ୍କ ଦର୍ଶନ ଲାଭ ପାଇଁ ସେ ଆଗ୍ରହୀ । ବ୍ୟସ୍ତ ବି । ପଚାରି ପଚାରି ଗୁରୁଙ୍କ ଘରେ ପହଞ୍ଚିଲା । ସାଧାରଣ ଘରଟିଏ । ବାହାରେ ଲୋକବାକ କେହି ନ ଥିଲେ । ଭିତରପଟୁ କବାଟ ବନ୍ଦ । ପ୍ରଥମେ ସେ ଡାକିଲା । କେହି ଶୁଣିଲେ ନାହିଁ । ତା'ପରେ ସେ କବାଟ ବାଡେଇଲା ।

ଭିତରପଟୁ ସ୍ତ୍ରୀ ଲୋକଟିର ପାଟି ଶୁଣାଗଲା । ସ୍ୱର ବଡ଼ ରୁକ୍ଷ, ଚଡ଼ା ଗଳା, ସତେ କି ସେ ରାଗିକରି କହୁଛି । ପାଟି ଶୁଣା ଯାଉଥାଏ "ତମ ଗୁରୁ ଘରେ ନାହିଁ । କୁଆଡ଼େ ଯାଇଛି । ସେଇଟା ଠକ, ପାଜି, କୁହୁକ ଜାଣେ, କମିଆ କରେ । ସେ ଏକ ଅକାଳ କୁଷ୍ମାଣ୍ଡ, ଅପଦାର୍ଥ, ବୋକା । ତମକୁ ଭେଳିକି ଲଗାଇଛି । ଘରେ ପଦୁଟିଏ

କଥା ବି କହେ ନାହିଁ । ଖାଲି ଗୁଣୁ ଗୁଣୁ ହେଉଥାଏ । ସେ ଯାହା ଭଲ ଜିନିଷ ଆଣେ, ସବୁ ଖାଏ । କାହାକୁ ଟିକିଏ ବି ଦିଏନାହିଁ । ଗଞ୍ଜେଇ ଟାଣେ । ଭାଙ୍ଗ ଖାଏ । ସବୁବେଳେ ନିଶାରେ ଢୁଲୁ ଢୁଲୁ । ଏଠେଇଁ ଅପେକ୍ଷା କରି ହେବନାହିଁ, ଯା ଫେରିଯା ।”

ସ୍ତ୍ରୀଟିର କଥାରେ ଆଗନ୍ତୁକଟି କାଠ । କେତେ ଆଶା କରି ସେ ଆସିଥିଲା । ଗୁରୁଙ୍କ ଦର୍ଶନ ତ ମିଳିଲା ନାହିଁ । ଗୁରୁଙ୍କ ଘରେ ଗୁରୁଙ୍କୁ ଭର୍ତ୍ସନା । ତାପୁଣି ଅସହ୍ୟ । ସବୁ କପଟ ତାକୁ ପ୍ରହେଳିକା ଭଳି ଲାଗିଲା । ଭାବିଲା ଗୁରୁଙ୍କୁ ଏପରି ଗାଳିଦେବାକୁ ତାଙ୍କ ଗୃହିଣୀ ସାହାସ କରିବ ନାହିଁ । ଏ ନିଶ୍ଚୟ ତାଙ୍କ ସ୍ତ୍ରୀ । ତାଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । ଭାବିଲା-କେଉଁ କାରଣରୁ ହୁଏତ ସେ ରାଗିଯାଇଛନ୍ତି । ସେଥିପାଇଁ ନାଁ । ଗାଳିଦେବା ସ୍ତ୍ରୀମାନଙ୍କର ସ୍ୱଭାବ । ସ୍ଥାନ, କାଳ ଓ ପାତ୍ର ଭାବନ୍ତିନାହିଁ । ଯାହାହେଉ ସେ ଏଠି ଅପେକ୍ଷା କରିବ । ସେ ତ ଦୂରରୁ ଚାଲି ଚାଲି ଆସିଥିଲା । ତାକୁ ଭାରି ଶୋଷ । ଟିକିଏ ପାଣି ପିଇ ଶୋଷ ମାରିବାକୁ ଇଚ୍ଛା । ତେଣୁ ଲୋକଟି କହିଲା—“ମା ! ମୁଁ ବହୁ ଦୂରରୁ ଆସିଛି । ଶୋଷରେ ମୋ ତଣ୍ଡି ଶୁଖିଯାଉଛି । ଟିକିଏ ପାଣିଦେଲେ ତୃଷା ନିବାରନ୍ତି ।”

ପାଟିରୁ ତାର କଥା ସରିନାହିଁ । ସ୍ତ୍ରୀ ଲୋକଟି ଓଲଟି ପାଟିକରି କହିଲା—ଯା, ଯା, ମୋ ଦୁଆରୁ ନିକଳ । ତୋର ଜାଣି, ଗୋଟ ଠିକ୍ ନାହିଁ, ମୋ ଘରୁ ପୁଣି ପାଣି ପିଇବୁ ? ଏଠି କ'ଣ ପିଇବା ପାଣି ଛତ୍ର ଦିଆଯାଉଛି ? ପାଖରେ ପାଣି ଟୋପାଏ ନାହିଁ । କୋଶେ ବାଟରେ ଯାଇଁ ପାଣି, ତାକୁ ପୁଣି ମୁଁ ବୋହିକରି ଆଣିବି । ସାଇତି ରଖିବି । ଆଉ ଠକଙ୍କର ତୋଷାମଦିଆଙ୍କୁ ଦେବି । ମୋର ବୁଢ଼ା ସରୁନାହିଁ, ଯା, ଯା, ପାଣି ଏଠି ମିଳିବ ନାହିଁ । ଶୀଘ୍ର ଏଠୁ ଯା । ନଇଲେ ପୁଣି ଦେଖିବୁ ।

ଲୋକଟିର ମୁହଁ କଳା ପଡ଼ିଗଲା । କେତେ ଦୂରରୁ ଆସିଛି କେତେ କଷ୍ଟ ସହିଛି । ଏହାହିଁ ତାର ଫଳ । ଏଠି ଅପେକ୍ଷାମାନେ ହିଁ ବିପଦ । ସେ ଆଉ ଅପେକ୍ଷା କଲାନାହିଁ । ମୁଣ୍ଡକୁ ତଳକୁ ପୋତି ସେ ଫେରିଲା । କେଉଁଠିକି ଯିବ ଜାଣିପାରିଲା ନାହିଁ ।

ବାଟରେ କେତେ ଲୋକଙ୍କୁ ସେ ଭେଟିଲା । ସେମାନେ ସେ ଗାଁର । କାମରୁ ଗାଁକୁ ଫେରୁଥାଆନ୍ତି । ଗୋରଖନାଥଙ୍କ ବିଷୟରେ ଜାଣିବାକୁ ତ ତାର ଭାରି ଆଗ୍ରହ । ତେଣୁ ସେମାନଙ୍କୁ ତାଙ୍କ କଥା ପଚାରିଲା । ଜଣେ କହିଲା—"ଗୁରୁ ଗୋରଖନାଥ ଲମ୍ପଟ ଏକଦମ୍ ପାଗଳ, ସ୍ତ୍ରୀ କଥାରେ ଥାଏ । ସ୍ତ୍ରୀଟା କଳହୁଡ଼ୀ । ତା ଗାଳିଦିଏ । ମାଡ଼ ବି ଦିଏ । ସ୍ତ୍ରୀ କଥାରେ ଜଙ୍ଗଲକୁ ଜାଳପା ଯାଏ । ଊଁ କି ଚୁଁ ହୁଏନାହିଁ । ସେ ତ ଘରେ ନଥାଏ, ଜଙ୍ଗଲ କାଠପାଇଁ ଯାଇଥିବ ।"

ଆଉ ଜଣେ କହିଲା—"ସନ୍ଥ ସବୁବେଳେ ପ୍ରାର୍ଥନା କରନ୍ତି ସ୍ତ୍ରୀ ତାଙ୍କର ଦୁଷ୍ଟା । ଘରେ ତ ରହି ହୁଏନାହିଁ । ସେଥିପା ବାହାରକୁ ସାଧନା ପାଇଁ ଯାଇଥିବେ ।"

ଲୋକଟି ଆଶ୍ଚର୍ଯ୍ୟ ! ଯାହାର ଖ୍ୟାତି ଭାରତ ବ୍ୟାପ୍ତ, ସେ ପୁ ଘରେ ଓ ଗାଁରେ ହେୟ; ନଗଣ୍ୟ । ଶ୍ରଦ୍ଧା ତ ନାହିଁ, ଘୃଣ୍ୟ ଭାବିଲା ଏତେଦୂର ଆସିଛି । ଟିକିଏ ଦେଖାହେଲେ ମନଟା ନିର୍ମ ହୋଇଯାଆନ୍ତା । ଯାହାହେଉ ପଛକେ, ତାଙ୍କୁ ସେ ଭେଟିବ ।

ସେ ଏସବୁ କଥା ଭାବି ଭାବି ଚାଲିଥାଏ । କେଉଁଆଡ଼କୁ ତା ନଘାନାହିଁ । ଜଙ୍ଗଲ ପାଖରେ ପହଞ୍ଚି ଗଲାଣି ।

ଦେଖିଲା—ଜଙ୍ଗଲରୁ ଜଣେ ଲୋକ ଆସୁଛନ୍ତି । ବୃଦ୍ଧ । ମୁଣ୍ଡରେ ଜଟାଭାର, ତା ଉପରେ ଗୋଟିଏ କାଠ । ହାତରେ ନଇଁ ପଡ଼ି ଥାନ୍ତି । ସାଥିରେ ବାଘଟିଏ । ତା ଉପରେ ଭରା ଦେଇ ଚାଲ

ଥାଆନ୍ତି । ବେକରେ ସାପଟିଏ ଗୁଡ଼ରେଇ ହୋଇଥାଏ । ଏକଦମ ହଳଦିଆ ରଙ୍ଗ, ସମ୍ଭବ ନାଗଟିଏ । ବିଷଧର ସାପ ।

ଲୋକଟି ଆଶ୍ଚର୍ଯ୍ୟ । ସ୍ତମ୍ଭୀଭୂତ । ସେ ତ ଗୁରୁଙ୍କ କଥା ଆଗରୁ ଶୁଣିଥିଲା । ଏବେ ସ୍ୱଚକ୍ଷୁରେ ଦେଖିଲା । ମନେହେଲା, ଏଇ ହିଁ 'ଗୁରୁ ଗୋରଖନାଥ ।' ତାଙ୍କ ବ୍ୟକ୍ତିତ୍ୱ ଏ ଆଉ କେହି ନୁହନ୍ତି । ସାଙ୍ଗେ ସାଙ୍ଗେ ସାଷ୍ଟାଙ୍ଗ ପ୍ରଣିପାତ କଲା । ଉଠି କହିଲା- "କାଠ ବୋଝ ବହୁତ ବାଧୁଥିବ । ମୋତେ ଦିଅନ୍ତୁ । ମୁଁ ବୋହିନେବି ।"

ଗୁରୁ ହସିଲେ । ହସିବାରେ ଥିଲା ଆନନ୍ଦ; ପରିତୃପ୍ତି । ଅନ୍ୟପ୍ରତି ଶ୍ରଦ୍ଧା, ସ୍ନେହ ଆଉ ଆଶ୍ୱାସନା । କହିଲେ—'ପୁଅରେ ! ତୋର କାଠ ବୋହିବାରେ ଆପତ୍ତି ମୋର ନାହିଁ । ବରଂ ମୋର ଭାର ଲାଘବ ହେବ । କିନ୍ତୁ ମୋର ତ କିଛି ରୋଜଗାର ନାହିଁ । ସେଥିପାଇଁ ମୁଁ ଜଙ୍ଗଲକୁ ଯାଏ । ଜାଳେଣି କାଠ କାଟି ଆଣେ । ସେତକ କାମ ଯଦି କିଏ କରିଦେବ, ଆଉ ମୋ ସ୍ତ୍ରୀ ତାକୁ ଦେଖିବ, ତା'ହେଲେ ମୋର ରୁଟି ପିଠି ରହିବ ନାହିଁ ।"

ଲୋକଟି ଗୁରୁଙ୍କର କଥା ଶୁଣି ଅବାକ୍ । ଯାହାଙ୍କ କଥା ବାଘ ମାନେ, ସାପ ଗଳାରେ ଫୁଲମାଳ ହୁଏ, ତାଙ୍କର ପୁଣି ସ୍ତ୍ରୀକୁ ଏତେ ଡର ଆଶ୍ଚର୍ଯ୍ୟ ।

ସ୍ତ୍ରୀ ତାଙ୍କର କଳହୁଡ଼ୀ । ତାଙ୍କୁ ନିନ୍ଦା କରେ । ତଥାପି ସେ ନିର୍ବିକାର । ତା' ଉପରେ ବିରକ୍ତ ହୁଅନ୍ତି ନାହିଁ ।ବରଂ ତା'କଥା ମାନନ୍ତି । ସେ କହିଲା—"ଗୁରୁଦେବ ! ଆପଣଙ୍କ ବିଷୟରେ ଆଗରୁ ବହୁ କଥା ଶୁଣିଥିଲି । ଏବେ ଦେଖୁଛି ଆପଣ ପ୍ରକୃତରେ ଜଣେ ସନ୍ଥ । ଆପଣ ମହାନ ।"

ସନ୍ଥ କହିଲେ—"ବାବୁରେ ! ଶ୍ରଦ୍ଧା କରିବାକୁ ହେଲେ

ପ୍ରତିବାଦ ଲୋଡ଼ା ନାହିଁ । ସବୁ ସହିବାକୁ ହେବ । ବାଘ, ସାପ ସମସ୍ତେ ଜୀବ । ଶ୍ରଦ୍ଧାର ପାତ୍ର । ଶ୍ରଦ୍ଧା କଲେ ସେମାନେ ବି ପୋଷା ମାନିବେ । କଳାହୁଡ଼ୀ ସ୍ତ୍ରୀ ଏକ ପରୀକ୍ଷା । ସେ ଯେତିକ ଶ୍ରଦ୍ଧା ପାଇବାର କଥା, ତା ହୁଏ ତ ପାଇନାହିଁ । ତେଣୁ ସେ ରାଗୁଛି । ତାର ରାଗ ମୋର ଧୈର୍ଯ୍ୟର ପରୀକ୍ଷା । ମୋର ସହନଶୀଳତା ବୃଦ୍ଧିର ପରିମାପକ । ଏହି ପରୀକ୍ଷାରେ ମୋତେ ଉତ୍ତୀର୍ଣ୍ଣ ହେବାକୁହିଁ ପଡ଼ିବ ।

ତାର ରାଗସତ୍ତ୍ୱେ ବି ମୋତେ ତାକୁ ଭଲ ପାଇବାକୁ ହେଉ । ଶ୍ରଦ୍ଧା କରିବାକୁ ହେବ । ଯେଉଁଥିରେ ସେ ନ ରାଗିବ; ତା ଦେଖିବାକୁ ହେବ । ଦିନ ଆସିବ । ସେ ବି ଶ୍ରଦ୍ଧାରେ କଣି ହୋଇ-ଯିବ । ଆଉ ସେ ରାଗି ପାରିବନାହିଁ । କଠୋରତା ତାର ଉଭେଇ ଯିବ । ସେ ବି ସମସ୍ତଙ୍କୁ ଭଲ ପାଇବ ।''

ଗୁରୁଙ୍କର ବାଣୀ ତାକୁ ଅମୃତ ଭଳି ଲାଗିଲା । ସେ ତ ଗୁରୁଙ୍କର କଥାନୁହେଁ ଭଗବତ୍ ବାଣୀ । ନିଜେ ବି ଗୁରୁ ପରୀକ୍ଷାରେ ଅବତୀର୍ଣ୍ଣ । ଏକ ଧୈର୍ଯ୍ୟର ପ୍ରତିମୂର୍ତ୍ତି ।

ଲୋକଟି ଆଉ ନିଜକୁ ସମ୍ଭାଳି ପାରିଲାନାହିଁ । ଗୁରୁ ଗୋରଖନାଥଙ୍କ ପାଦତଳେ ଲମ୍ବିହୋଇ ପଡ଼ିଗଲା । କହିଲା, "ମୋର ତୀର୍ଥଯାତ୍ରା ସଫଳ ହୋଇଛି । ମୁଁ ବର୍ତ୍ତମାନ ମୋର ଜୀବନର ଶେଷ ଶିକ୍ଷା ଲାଭକଲି । ଜାଣିଲି-ପ୍ରେମର ଶକ୍ତି ଅସୀମ । ସେଥିରେ ସମସ୍ତଙ୍କୁ ବଶ କରିହୁଏ । ସେଥିପାଇଁ ନିଜର ଧାହାସ ଓ ସାମର୍ଥ୍ୟ ଦରକାର । ପ୍ରେମ ବଳରେ ପୃଥିବୀ ବିଜୟ ମଧ୍ୟ ସମ୍ଭବପର ।''

—:※:—

# ପୃଥିବୀର ଲୋକକଥା

(୧) ଭିଏତ ନାମ, (୨) ଲାଦାଖ-୧, (୩) ଲାଦାଖ-୨, (୪) ପଞ୍ଜାବ-୧
(୫) ପଞ୍ଜାବ-୨, (୬) ପଞ୍ଜାବ-୩, (୭) ପଞ୍ଜାବ-୪, (୮) ପଞ୍ଜାବ-୫,
(୯) ଉତ୍ତର ପ୍ରଦେଶ-୧, (୧୦) ଉତ୍ତପ୍ରଦେଶ-୨, (୧୧) ପଞ୍ଜାବ-୬,
(୧୨) ଉତ୍ତର ପ୍ରଦେଶ-୩, (୧୩) ପଞ୍ଜାବ-୭, (୧୪) ଉତ୍ତର ପ୍ରଦେଶ-୪,
(୧୫) ମଧ୍ୟ ପ୍ରଦେଶ-୧, (୧୬) କାଶ୍ମୀର-୧, (୧୭) ଆସାମ-୧,
(୧୮) କାଶ୍ମୀର-୨, (୧୯) କାଶ୍ମୀର-୩, (୨୦) ଇହୁଦୀ-୧
(୨୧) ହିମାଚଳ ପ୍ରଦେଶ-୧, (୨୨) ଆସାମ-୨, (୨୩) ଶ୍ରୀଲଙ୍କା-୧,
(୨୪) ଓଡ଼ିଆ-୧, (୨୫) ଇହୁଦୀ-୨, (୨୬) ସାନ୍ତାଳ-୧ (୨୭) ଇଟାଲି-୧,
(୨୮) ମଧ୍ୟ ପ୍ରଦେଶ-୨, (୨୯) ଶ୍ରୀଲଙ୍କା-୨, (୩୦) ସାନ୍ତାଳ-୨,
(୩୧) ସାନ୍ତାଳ-୩, (୩୨) ସାନ୍ତାଳ-୪, (୩୩) ସାନ୍ତାଳ-୫),
(୩୪) ସାନ୍ତାଳ-୬, (୩୫) ସାନ୍ତାଳ-୭, (୩୬) ନେପାଳ-୧,
(୩୭) ହରିୟାନା-୧, (୩୮) ସାନ୍ତାଳ-୮, (୩୯) ସାନ୍ତାଳ-୯,
(୪୦) ସାନ୍ତାଳ-୧୦, (୪୧) ସାନ୍ତାଳ-୧୧, (୪୨) ସାନ୍ତାଳ-୧୨,
(୪୩) ସାନ୍ତାଳ-୧୩, (୪୪) ସାନ୍ତାଳ-୧୪, (୪୫) କନ୍ଧ-୧,
(୪୬) ନେପାଳ-୨ (୪୭) ତିବ୍ବତ-୧, (୪୮) ଇହୁଦୀ-୩,
(୪୯) ଇହୁଦୀ-୪, (୫୦) ଜାପାନ-୧, (୫୧) ତାମିଲ୍‌ନାଡୁ-୧,
(୫୨) ତାମିଲ୍‌ନାଡୁ-୨, (୫୩) ତାମିଲ୍‌ନାଡୁ-୩, (୫୪) ତିବ୍ବତ-୨,
(୫୫) ଫିଲ୍‌ପାଇନ୍-୧, (୫୬) ଫିଲ୍‌ପାଇନ୍-୨, (୫୭) ଚୀନ୍-୧,
(୫୮) ଫ୍ରାନ୍‌ସ-୧, (୫୯) ଫ୍ରାନ୍‌ସ-୨ (୬୦) ସ୍କଟ୍‌ଲ୍ୟାଣ୍ଡ୍-୧ ।

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**
**ପୋ.: ଦିଘାଳ, ଜିଲ୍ଲା : ପୁରୀ**
**ମହାନ୍ତିପଡ଼ା, କାଫଲା, କଟକ-୨**

**ପ୍ରାପ୍ତି ସ୍ଥାନ : ଗ୍ରନ୍ଥାଳୟ, ପଥିକ, ଭୁବନେଶ୍ୱର, ପଦ୍ମାଳୟା, ବାଦାମବାଡ଼ି,**
**କଟକ ଟ୍ରେଡ଼ିଂ କମ୍ପାନୀ, ବାଲୁବଜାର, କଟକ ।**